# ପ୍ରତ୍ୟେକ କୁମକୁମ୍ ଏକ ଜାତିର ନୁହେଁ

## ଶିଙ୍ଗାର ଅତ୍ୟଧିକ ଉଚ୍ଚ ଜାତିର
## ମସୃଣ, ସମାନ ଭାବରେ ଲଗାଯାଏ।
## ଅନେକ ବେଶୀ ସୁନ୍ଦର,
## ବିଖୁରି ଯାଏନା, ଛାଡ଼େନା।
## କୌଣସି ଦାଗ ପଡ଼େନି।
## ବୈଜ୍ଞାନିକ ପଦ୍ଧତିରେ ତିଆରି।

ସୁତରାଂ ସର୍ବଦା ଲଗାନ୍ତୁ

**ଶିଙ୍ଗାର**

ଭାରତର ସବୁଠାରୁ ବେଶୀ
ବିକ୍ରି ହେଉଥିବା
ମନମତାଣିଆ କୁମକୁମ

ଫ୍ୟାସିନାଣ୍ଟ ପ୍ରୋଡକ୍ଟସ, ୮୦୯, ପ୍ରସାଦ ଚେମ୍ବରସ,
ବମ୍ବେ-୪୦୦ ୦୦୮।






୭ ଟି ରଙ୍ଗବାଲା ପକେଟ

everest/1141/SH-or

## 'ଜହ୍ନମାମୁଁ' ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଇଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତି ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡାଲ୍ଟନ୍ ଏଜେନ୍ସୀଜ୍, ମାଡ୍ରାସ - ୬୦୦ ୦୨୬

## ଜହ୍ନମାମୁଁ

### ଜାନୁଆରୀ ୧୯୭୮




Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor: NAGI REDDI. CHANDAMAMA is published monthly and distributed in U.S.A. by Chandamama Distributors, West Chester PA 19380. Subscription 1 year $ 6-50. Second Class Postage paid at West Chester, PA.

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଂଚାଳକ : ନାଗି ରେଡ୍ଡୀ

'ଜହ୍ନମାମୁଁ' ତାର ଶ୍ରଦ୍ଧାର ଓ ସ୍ନେହର ପାଠକ ପାଠିକା-ମାନଙ୍କୁ ନବବର୍ଷର ଶୁଭେଚ୍ଛା ଜ୍ଞାପନ କରୁଛି । ନବବର୍ଷ ସମସ୍ତଙ୍କୁ ଆଣିଦେଉ ଶାନ୍ତି, ସ୍ୱସ୍ତି ଓ ପ୍ରଗତି ।

ଏ ସଂଖ୍ୟାରେ 'ବୀର ହନୁମାନ' ଲେଖାରେ ଶ୍ରୀରାମଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନର ବିବରଣୀ ଦିଆଯାଇଛି । ଶ୍ରୀରାମଙ୍କ ଅନୁପସ୍ଥିତିରେ ଭରତ ରାଜ୍ୟ ଶାସନ କରୁଥିଲେ । କିନ୍ତୁ ଚଉଦ ବର୍ଷ କ୍ଷମତାରେ ଥାଇ ମଧ୍ୟ ଆସନ ପ୍ରତି ତାଙ୍କର ତିଳେ ମଧ୍ୟ ଆସକ୍ତି ଆସି ନ ଥିଲା । ଭରତଙ୍କ ଭିତରେ ଆସକ୍ତି ଆସିଥିଲେ ରାମ ରାଜ୍ୟ ତ୍ୟାଗ କରିଥା'ନ୍ତେ । ଉଭଙ୍କର କି ଅମାପ ମହତ୍ତ୍ୱ ! ଭାରତର ପ୍ରାଚୀନ ପରମ୍ପରା ଅନୁସାରେ ଏହାହିଁ ଆଦର୍ଶ ଶାସକର ଚରିତ୍ର ।

ବର୍ଷ : ୧୧ ଜାନୁଆରୀ ୧୯୭୮ ଅଙ୍କ : ୭

ପ୍ରତି ସଂଖ୍ୟା : ଟ ୧.୨୫ : : ବାର୍ଷିକ ମୂଲ୍ୟ : ଟ ୧୫.୦୦





# ଅମର ବାଣୀ

ପରାଚଃ କାମାନନୁଯନ୍ତି ବାଲସ୍ତେ ମୃତ୍ୟୋର୍ଯ୍ୟନ୍ତି ବିତତସ୍ୟ ପାଶମ୍ ।
ଅଥ ଧୀରା ଅମୃତତ୍ୱଂ ବିଦିତ୍ୱା ଧ୍ରୁବମଧ୍ରୁବେଷ୍ୱିହ ନ ପ୍ରାର୍ଥୟନ୍ତେ ॥ ॥ ୧ ॥

[ମିଥ୍ୟା ସୁଖ ପଛରେ ଧାବମାନ ହୋଇ ଅଜ୍ଞାନ ବ୍ୟକ୍ତି ମୃତ୍ୟୁ-ଜାଲରେ ପତିତ ହୁଏ । ଜ୍ଞାନୀ ଜାଣେ ଚିରନ୍ତନ ସତ୍ୟ । ସେ ଜୀବନର ଅସ୍ଥାୟୀ ସୁଖ ଭୋଗରୁ କୌଣସି ବାସ୍ତବ ଆନନ୍ଦ ଆଶା କରେ ନାହିଁ ।]

ମୃଦ୍‌ଘଟ ଇବ ସୁଖଭେଦ୍ୟୋ ଦୁଃସନ୍ଧାନଶ୍ଚ ଦୁର୍ଜନୋ ଭବତି ।
ସୁଜନସ୍ତୁ କନକଘଟବତ୍ ଦୁର୍ଭେଦ୍ୟଶ୍ଚାଶୁସନ୍ଧେୟଃ ॥ ॥ ୨ ॥

[ମାଟିର ପାତ୍ର ସହଜରେ ଭାଙ୍ଗିଯାଏ; ଭାଙ୍ଗି ଗଲେ ସହଜରେ ଯୋଡ଼ା ହୁଏ ନାହିଁ । ଦୁର୍ଜନ ସେହିପରି ସହଜରେ ଅନ୍ତର ହୋଇ ଯାଏ । ଥରେ ଅନ୍ତର ହେଲେ ପୁଣି ମିତ୍ର ହୋଇପାରେ ନାହିଁ । କିନ୍ତୁ ସ୍ୱର୍ଣ୍ଣପାତ୍ର ଯେପରି ସହଜରେ ଭାଙ୍ଗେ ନାହିଁ ବା ଭାଙ୍ଗିଗଲେ ମଧ୍ୟ ସହଜରେ ଯୋଡ଼ି ହୋଇଯାଏ, ସୁଜନ ସାମୟିକ ଭାବେ ଅନ୍ତର ହେଲେ ବି ତା' ସହ ମିତ୍ରତା ପୁନଃ ପ୍ରତିଷ୍ଠା ହୋଇପାରେ ।]

ମୂର୍ଖୋଽପି ଶୋଭତେ ତାବତ୍ ସଭାୟାଂ ବସ୍ତ୍ରବେଷ୍ଟିତଃ ।
ତାବଚ୍ଚ ଶୋଭତେ ମୂର୍ଖୋ ଯାବତ୍ କିଞ୍ଚିନ୍ନ ଭାଷତେ ॥ ॥ ୩ ॥

[ମୂର୍ଖ ମଧ୍ୟ ମୂଲ୍ୟବାନ ବେଶ ପିନ୍ଧି ଶୋଭାରେ ଶୋଭା ପାଏ—କିନ୍ତୁ କେବଳ ସେହିପର୍ଯ୍ୟନ୍ତ, ଯେପର୍ଯ୍ୟନ୍ତ ସେ ମୁହଁ ନ ଖୋଲିଛି ।]

ଖାଣ୍ଟି ଓ ଭେଲ



# ପଞ୍ଚତନ୍ତ୍ର

(କାକୋଲୂକୀୟମ୍)

[ ୮ ]

ସନ୍ଧ୍ୟା ପୂର୍ବରୁ ପେଚକରାଜ ଅରିମର୍ଦ୍ଦନ ନିଜ ଅନୁଚରମାନଙ୍କୁ ଧରି କାଉମାନଙ୍କୁ ଆକ୍ରମଣ କରିବାକୁ ବରଗଛ ପାଖକୁ ଆସି ନିଜେ ଅଦୂରରେ ରହି ଅନୁଚରମାନଙ୍କୁ କହିଲା, "କାଉରାଜା ଓ ତା'ର ମନ୍ତ୍ରୀ ଭିତରେ ବିଭେଦ ଉପୁଜିଥିବାର ମୁଁ ଜାଣିଛି । ଏତିକିବେଳେ କାଉମାନଙ୍କୁ ଆକ୍ରମଣ କରିବା ସହଜ ।"

ପେଚକମାନେ ଚିତ୍କାର କରି ଗଛର ଡାଳପତ୍ର ଭିତରକୁ ମାଡ଼ିଗଲେ । କିନ୍ତୁ ଗଛରେ ଗୋଟିଏ ବି କାଉ ନ ଥିଲେ । ତଳେ ପଡ଼ି ବୃଦ୍ଧ କାଉ ସ୍ଥିରଜୀବୀ ସେତେବେଳେ ଛଟପଟ ହେବାର ଛଳନା କରୁଥାଏ । ପେଚକମାନେ ତାକୁ ମାରିବାକୁ ଝପଟି ଆସନ୍ତେ ସେ କହିଲା, "ମୋତେ ମାରନା, ମାରନା । ବରଂ ରାଜାଙ୍କୁ ଡାକ । ମୋର ବହୁତ କଥା ଅଛି ।"

ପେଚକମାନେ ଅରିମର୍ଦ୍ଦନଙ୍କୁ ସେକଥା କୁହନ୍ତେ ସେ କୌତୂହଳୀ ହୋଇ ସ୍ଥିରଜୀବୀ ପାଖକୁ ଉଡ଼ିଆସିଲା ଓ ପଚାରିଲା, "କହୋ ! ତୁମେ ତ କାଉ ରାଜାର ଜଣେ ଅମାତ୍ୟ । ତୁମର ଏମିତି ଅବସ୍ଥା କିଆଁ ?"

ସ୍ଥିରଜୀବୀ ଉତ୍ତର ଦେଲା, "ରାଜା ! କ'ଣ ଆଉ କହିବି, ତୁମରି ଗୌରବ ଗାନ କରିବାକୁ ଯାଇ ମୋର ଏ ଅବସ୍ଥା । ଗତ କାଲି ରାତିରେ ଆମର ରାଜା ମେଘବର୍ଣ୍ଣ ତୁମ ଆବାସ ଉପରେ ଚଢ଼ାଉ କରିବାର ପ୍ରସ୍ତାବ ଦେବାରୁ ମୁଁ ତା'ର ବିରୋଧ କରି କହିଲି କି ପେଚକଙ୍କ ଭଳି କ୍ଷମୀ ତଥା ବଳଶାଳୀ ଜୀବଙ୍କ ସହ ଶତ୍ରୁତା ରଖିବା ମୂଢ଼ତା ଛଡ଼ା ଆଉ କିଛି ନୁହେଁ । କାଉ ଜାତିର ମଙ୍ଗଳ ଦୃଷ୍ଟିରୁ ବରଂ ସନ୍ଧି କରିବା ବିଧେୟ । ମୋ ଉପଦେଶ ଶୁଣି ମୋତେ ରାଜଦ୍ରୋହୀ ଆଖ୍ୟା ଦେଇ ଭୀଷଣ ଗାଳିଗୁଲଜ ଓ ମାଡ଼ ଦେଇ ଏଠାରେ ଫୋପାଡ଼ି ଦେଇ ଅବିବେକୀ ମେଘବର୍ଣ୍ଣ ସମସ୍ତଙ୍କୁ ଧରି ଆଉ କୁଆଡ଼େ ଚାଲିଯାଇଛି ।"

"ମେଘବର୍ଣ୍ଣ କେଡ଼େ ମୂର୍ଖ ! ତୁମ ସହ ଯେପରି



ଅନ୍ୟାୟ ବ୍ୟବହାର କରୁଛି, ସେ ପାଇଁ ତାକୁ ଫଳ ଭୋଗିବାକୁ ପଡ଼ିବ । ମୁଁ ତା'ର ସର୍ବନାଶ କରିବ ।" ଅରିମର୍ଦ୍ଦନ କହିଲା ।

"ରାଜା ! ମୁଁ ତୁମର ଶରଣାର୍ଥୀ । ଆଜିଠାରୁ ମୁଁ ତୁମର ଅନୁଗତ ହୋଇ ରହିଲି । କାଉମାନଙ୍କ ବାସସ୍ଥାନକୁ ଯାଇ କିପରି ସେମାନଙ୍କର ସର୍ବ-ନାଶ କରିବାକୁ ହେବ, ସେ ବିଷୟରେ ମୁଁ ମୋର ଯତ୍‌ସାମାନ୍ୟ ପରାମର୍ଶ ଦେବି ।" ସ୍ଥିର-ଜୀବୀ କହିଲା ।

ଏହା ଶୁଣି ଅରିମର୍ଦ୍ଦନ ନିଜ ମନ୍ତ୍ରୀ ରକ୍ତାକ୍ଷ, କ୍ରୂରାକ୍ଷ, ଦୀପାକ୍ଷ, ବକ୍ରନାଶ ତଥା ପ୍ରାକାରକର୍ଣ୍ଣଙ୍କ ସହ ପରାମର୍ଶ କଲା । ପ୍ରଥମେ ଅରିମର୍ଦ୍ଦନ ରକ୍ତାକ୍ଷର ମତାମତ ପଚାରିବାରୁ ସେ କହି "ସ୍ଥିରଜୀବୀକୁ ମାରି ଫୋପାଡ଼ି ଦେବାହିଁ ଠି ହେବ । ବର୍ତ୍ତମାନ ସେ ଆହତ ଅବସ୍ଥାରେ ଅଛି ସେଥିପାଇଁ ଏତେ ମଧୁର କଥାମାନ କହୁଛି ସୁସ୍ଥ ହେବା ମାତ୍ରେ ଉଡ଼ି ପଳାଇବ । ଏ ଶତ୍ରୁ ଏହା ଉପରେ ବିଶ୍ୱାସ ନାହିଁ । ଆଜି ନ ହେଲେ ବି ହଠାତ୍ ଆଉ ଦିନେ ଏହା ଭିତରେ ଆମ ପ୍ରତି ବୈରଭାବ ଆସିପାରେ । ସେହିଭଳି ଆଶଙ୍କାରେ ଦିନେ ବ୍ରାହ୍ମଣର ବନ୍ଧୁତାକୁ ସାପ ପ୍ରତ୍ୟାଖ୍ୟାନ କରିଦେଇଥିଲା ।"

"ସେ ଘଟଣାଟି କ'ଣ ?" ଅରିମର୍ଦ୍ଦନ ପଚା-ରିଲା । ରକ୍ତାକ୍ଷ ସେଇଠୁ କାହାଣୀଟି ଗପିଲା :

ହରିଦତ୍ତ ନାମରେ ଥିଲା ଜଣେ ବ୍ରାହ୍ମଣ । ଗାଁ ମୁଣ୍ଡରେ ତା'ର ଥିଲା ଖଣ୍ଡିଏ ଜମି । ସେଥିରେ ସାମାନ୍ୟ ଫସଲ ହେଉଥାଏ । ହରିଦତ୍ତ ବହୁତ କଷ୍ଟରେ ଚଳୁଥାଏ । ଦିନେ ହରିଦତ୍ତ ଗୋଟାଏ ଗଛ ମୂଳରେ ବିଶ୍ରାମ କରୁଛି, ଦେଖିଲା, ଗୋଟାଏ ପ୍ରକାଣ୍ଡ ସାପ ବିଳଟିଏ ଭିତରେ ପ୍ରବେଶ କରୁଛି । ବ୍ରାହ୍ମଣ ଭାବିଲା, "ଏ ସାପ ହୁଏତ ଏ କ୍ଷେତର ଦେବତା ହୋଇଥିବ । କିଏ କହିବ, ଏହାକୁ ଖୁସି କଲେ ମୋର ଉପକାର ହେବ ।"

ସେ ଗୋଟିଏ ପାତ୍ରରେ ଟିକିଏ ଦୁଧ ଆଣି ସାପ ଆଗରେ ଥୋଇ କହିଲା, "ସର୍ପଦେବତା !

ମୁଁ ଗରିବ । ମୋ ପ୍ରତି ଦୟା ରଖ !"

ସାପ ଦୁଧ ପିଇ ଖୁସି ହେଲା । ପରଦିନ ହରିଦତ୍ତ ଆସି ଦେଖିଲା, ସେ ପାତ୍ରରେ ସୁନା ମୁଦ୍ରାଟିଏ ଥୁଆ ହୋଇଛି । ସେ ବୁଝିଲା ସାପଟି ସେତିକି ଦୟା କରିଛି ।

ସେଣିକି ସବୁଦିନେ ହରିଦତ୍ତ ସାପକୁ ଦୁଧ ଦିଏ ଓ ପୂଜା କରେ ଓ ଗୋଟିଏ ଗୋଟିଏ ସୁନା ମୁଦ୍ରା ପାଏ । ସେ ଶୀଘ୍ର ବେଶ୍ ଧନୀ ହୋଇଗଲା ।

ଥରେ ହରିଦତ୍ତଙ୍କୁ ଜରୁରି କାମରେ ସ୍ଥାନାନ୍ତର ଯିବାକୁ ପଡ଼ିଲା । ସାପକୁ ଦୁଧ ପିଆଇବା ଭାର ସେ ପୁଅ ଉପରେ ଛାଡ଼ିଦେଇ ଗଲା । ପରଦିନ ପୁଅ ଜମିକୁ ଯିବାବେଳେ ମନେ ମନେ ଭାବିଲା, "ସାପଟା ନିଶ୍ଚେ ଗୁଡ଼ାଏ ସୁନା ମୁଦ୍ରା ଗାତ ଭିତରେ ଜମା କରି ରଖିଛି । ତାକୁ ମାରିଦେଇ ଗାତ ଖୋଳି ସବୁତକ ଏକାଥରେ ବାହାର କରିନେଲେ କଥା ଛିଡ଼ିଯିବ ।"

ସାପ ଦୁଧ ପିଇବା ବେଳେ ଟୋକା ତାକୁ ପାହାରେ ପକାଇଲା । ତା'ପରେ ସାପ ମରିଛି ଭାବି ଗାତ ଖୋଳିବାକୁ ଉଦ୍ୟତ ହେବା ବେଳକୁ ସାପ ତାକୁ ମାରିଲା ଚୋଟେ । ଟୋକା ଚିତ୍କାର କରି ପଡ଼ିଗଲା । ଜଣେ ଦୁଇଜଣ ଲୋକ ଦୌଡ଼ି ଆସିଲେ । ଟୋକା ସେମାନଙ୍କୁ ସବୁ କହି ମୃତ୍ୟୁ ସମ୍ବରଣ କଲା ।

ବ୍ରାହ୍ମଣ ଫେରିଆସି ସବୁ ଶୁଣିଲା । ପରଦିନ ଜମି ଉପରକୁ ଯାଇ ସାପକୁ ଦୁଧ ଭେଟି ଦେଇ କହିଲା, "ସର୍ପଦେବତା ! ମୋ ପୁଅ ତା' ନିଜ ଦୋଷରୁ ମଲା । ଆପଣ ମୋ ଉପରେ ରୁଷ୍ଟ ହୁଅନ୍ତୁ ନାହିଁ ।"

କିନ୍ତୁ ସାପ ଉତ୍ତର ଦେଲା, "ହେ ବ୍ରାହ୍ମଣ ! ମୁଁ ତୁମ ପୁଅକୁ ମାରିଛି । ଆମ ବନ୍ଧୁତା ତୁଟିଯିବା ପାଇଁ ତାହାହିଁ ଯଥେଷ୍ଟ । ତାହା ସତ୍ତ୍ୱେ ବନ୍ଧୁତା ବଜାୟ ରଖିବାର ଚେଷ୍ଟା କଲେ ତାହା କୃତ୍ରିମ । ସୁନା ମୁଦ୍ରା ଲୋଭରେ ତୁମେ ପୁତ୍ରଶୋକ ଭୁଲିଗଲେ ବି ସେଇଟା ଅସ୍ୱାଭାବିକ କଥା ହେବ । ଏଥର ତୁମେ ତୁମ ବାଟରେ ଯାଅ; ମୁଁ ମୋ ବାଟରେ ଯାଏଁ ।"



# ଅତୀତ ଓ ବର୍ତ୍ତମାନର ସାକ୍ଷୀ

ଲେବାନନରେ ଅବସ୍ଥିତ ଏହି ଘାଟୀ ତିନିହଜାର ବର୍ଷର ଇତିହାସ ବହନ କରୁଛି । ମିଶର, ଆସିରିଆ, ଗ୍ରୀସ୍, ରୋମ, ଫରାସୀ ଇତ୍ୟାଦି ବହୁ ଦେଶର ବାହିନୀ ଏହି ପଥରେ ଯାଇଛନ୍ତି । ସେମାନେ କେହି କେହି ଏ ଘାଟୀ ପାଖରେ ନିଜ ନିଜ ବିବରଣୀ ଖୋଦାଇ କରିଯାଇଛନ୍ତି । ପୁଣି ଚିତ୍ରଦୃଷ୍ଟ ଫଳକରେ ନିକଟ ଅତୀତର ଏକ ଘଟଣାର ବିବରଣୀ ବି ଦେଖିବାକୁ ମିଳେ ।





# ମାୟା ସରୋବର

[ ୨୩ ]

[ନଦୀ କୂଳରେ ଜୟଶୀଳ ଓ ତନ୍ତ୍ର ସାଧକଙ୍କ ସହ ଦେବଶର୍ମାଙ୍କ ଭେଟ ହେଲା । ସେତିକିବେଳେ ହଂସ ଚାଳିତ ଏକ ଉଡ଼ନ୍ତା ରଥ ଆସି ଜଳରେ ଅବତରଣ କଲା । ସେ ରଥରୁ ମାୟାସରୋବରେଶ୍ୱର ଏବଂ ରାଜକୁମାରୀ କାଞ୍ଚନମାଳା ବଣ ଭିତରେ ଖସି ପଡ଼ିଥିଲେ । ରଥକୁ ତତ୍କ୍ଷଣାତ୍ ଜଳ-ରାକ୍ଷସମାନେ ଆକ୍ରମଣ କଲେ ।]

ହଂସ ରଥକୁ ଜଳରାକ୍ଷସମାନେ ବେଢ଼ିଗଲେ ।

ତାହା ଦେଖି ଜୟଶୀଳ ତାଙ୍କ ତରବାରିକୁ ତଳୁ ଉଠାଇନେଇ ବିସ୍ମୟଭରେ କହିଲେ, "ଏ ଜଳରାକ୍ଷସଗୁଡ଼ାକ ତ ବଡ଼ ବିଚିତ୍ର ଜୀବ ! ଏମାନଙ୍କ ମୁଣ୍ଡ ହେଟା ଭଳି; ଦେହ ମଣିଷ ଭଳି । ଆଶ୍ଚର୍ଯ୍ୟ !"

ମକରକେତୁ ଉତ୍କଣ୍ଠିତ ଭାବରେ ନିଜ ଅସ୍ତ୍ର ଉଦ୍ୟତ କରି ଜୟଶୀଳଙ୍କ ପାଖକୁ ଆସି କହିଲା, "ଜୟଶୀଳ ! ଏ ରାକ୍ଷସମାନେ ହଂସରଥ ଉପରେ ଆକ୍ରମଣ କରିବାକୁ ବସିଛନ୍ତି । ରଥକୁ ଏମାନଙ୍କ କବଳରୁ ରକ୍ଷା କରିବା ନିମନ୍ତେ ତୁମ ସହାୟତା ମିଳିବ ନାହିଁ ?"

ଜୟଶୀଳ ନିଜ ତରବାରିକୁ ଖୋପରେ ପୂରାଇ କହିଲେ, "ଶୁଣ, ଆମ ରାଜା କନକାକ୍ଷଙ୍କ



ଧାରଣା ଭିନ୍ନ । ସେ ଭୁଲ ବୁଝୁଛନ୍ତି ।"

"ଜୟଶୀଳ ! ମୋ କଥା ଶୁଣ । ବର୍ତ୍ତମାନ ତରବାରି ବାହାର କରି ରାକ୍ଷସମାନଙ୍କୁ ସାମନା କର । ପ୍ରତିଶୋଧ ଚିନ୍ତା କରିବା ବେଳ ଇଏ ନୁହେଁ ।" ଦେବଶର୍ମା କହିଲେ ।

ଏଥର ଜୟଶୀଳ କାଳବିଳମ୍ବ ନ କରି ତରବାରି ବାହାର କଲେ । ତାହା ଦେଖି ତନ୍ତ୍ର-ସାଧକ ମଧ୍ୟ 'ଜୟ ମହାକାଳ !' ବୋଲି ରଡ଼ି କରି ନରବାନର ଉପରେ ସବାର୍ ହେଲେ । ଆଖି ପଲକରେ ସେମାନେ ନଦୀ ଭିତରକୁ ଡେଇଁପଡ଼ିଲେ ଏବଂ ରାକ୍ଷସମାନଙ୍କୁ ଆକ୍ରମଣ କଲେ ।

ପୁତ୍ର କନ୍ୟାଙ୍କୁ ,ତୁମ ରାଜା ମାୟା ସରୋବରେଶ୍ୱର ଲୁଚାଇ ନେଇଆସିଛି । ଆମେ ଆସିଛୁ ସେମା-ନଙ୍କ ସନ୍ଧାନରେ । ସେମାନଙ୍କୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ତୁମ ରାଜା ଉପରେ ପ୍ରତିଶୋଧ ନେବା ଆମ ଉଦ୍ଦେଶ୍ୟ । ହଂସରଥରେ ଯେ ତୁମ ରାଜା ନାହିଁ, ସେଇଟା ତା'ର ଭାଗ୍ୟର କଥା ।"

ମକରକେତୁ ଦବିଯାଇ ଦେବଶର୍ମାଙ୍କୁ କହିଲା, "ବୈଦ୍ୟଦେବ ! ଜୟଶୀଳ ଏ ପର୍ଯ୍ୟନ୍ତ ଆମପ୍ରତି ଏତେ ତୀବ୍ର କ୍ରୋଧ ପୋଷଣ କରୁଛନ୍ତି, ଏ କଥା ମୁଁ ଜାଣି ନ ଥିଲି । ଆପଣ ତ ଦେଖିଛନ୍ତି, ଆମ ରାଜା ସେ ରାଜପୁତ୍ର ଓ ରାଜକନ୍ୟାଙ୍କୁ କେତେ ଆଦରରେ ରଖିଛନ୍ତି । କିନ୍ତୁ ଜୟଶୀଳଙ୍କ

ତେଣେ ହଂସରଥର ଚାଳକ ଜଳରାକ୍ଷସ-ମାନଙ୍କ କବଳରୁ ନିଜକୁ ବଞ୍ଚାଇବା ନିମନ୍ତେ ରଥକୁ ଏଣେ ତେଣେ ନେଇଯାଉଥାଏ । ଜଳ-ଗ୍ରହ ଉପରେ ସବାର୍ ହୋଇ ଶୂଳ ବୁଲାଉ ବୁଲାଉ ମକରକେତୁ ରାକ୍ଷସମାନଙ୍କ ଆଡ଼କୁ ଅଗ୍ରସର ହେଉଥାନ୍ତି । ସଙ୍ଗେ ସଙ୍ଗେ ନରବାନର ଉପରେ ବସି ତନ୍ତ୍ରସାଧକ ମଧ୍ୟ ପାଟି କରି ଆଗକୁ ଯାଉଥାନ୍ତି । ଜଳରାକ୍ଷସମାନେ ଡରିଗଲେ ଓ ପାଣିରେ ବୁଡ଼ି ପଳାଇବାର ଉଦ୍ୟମ କଲେ । କିନ୍ତୁ ଜଳଗ୍ରହ ନିଜ ଶୁଣ୍ଢ ଦ୍ୱାରା ସେମାନଙ୍କୁ ଜଣ ଜଣ କରି ଉଠାଇ କୂଳକୁ ଫୋପାଡ଼ି ଦେବାକୁ ଲାଗିଲା । ଯେଉଁ ରାକ୍ଷସ ଜୟଶୀଳଙ୍କ ହାତୁଡ଼ରେ

ପଡ଼ିଲା, ସିଏ ତାଙ୍କ ତରବାରି ଚୋଟରେ ମଲା ।

ଅଳ୍ପ ସମୟ ଭିତରେ ଗୁଡ଼ିଏ ରାକ୍ଷସ ମଲେ । ଅନେକଗୁଡ଼ିଏ ଆହତ ହୋଇ ଜଳସ୍ରୋତରେ ଭାସି ଚାଲିଗଲେ । ଜଳଗ୍ରହ ଯେଉଁ ରାକ୍ଷସମାନଙ୍କୁ ଶୁଣ୍ଢରେ ତୋଳି କୂଳକୁ ଫୋପାଡ଼ି ଦେଉଥାଏ, ସେମାନେ ଏପରି ଭାବରେ ଛେଚା ହୋଇଯାଉଥାନ୍ତି ଯେ ଆଉ ଉଠି ପାଣି ଭିତରେ ପଶିବା ଭଳି ତାକତ୍ ସେମାନଙ୍କର ନ ଥାଏ । ସେଇ କୂଳରେ ପଡ଼ିରହି ସେମାନେ ଚିତ୍କାର କରୁଥାନ୍ତି ।

ତନ୍ତ୍ରସାଧକ ବାହନ ନରବାନର ଗୋଟାଏ ଜଳରାକ୍ଷସକୁ କାବୁ କରି କୂଳକୁ ନେଇଆସିଲା । ପଛେ ପଛେ ମକରକେତୁ, ସର୍ପନଖ ଓ ସର୍ପଶୃଙ୍ଗ ମଧ୍ୟ ଆସି କୂଳରେ ପହଞ୍ଚିଲେ । ଜୟଶୀଳ କିନ୍ତୁ ହଂସରଥ ଉପରକୁ ଉଠିଯାଇ ରଥଚାଳକ ଆଡ଼କୁ ତରବାରି ନିର୍ଦ୍ଦେଶ କରି କହିଲେ, "ଶୁଣ, ଚୁପ୍‌ଚାପ୍ ଏ ରଥ କୂଳକୁ ନେଇଚାଲ । ଯଦି ରଥସହ ତୁମେ ଉଡ଼ି ପଳାଇବାର ଉଦ୍ୟମ କରିବ, ତେବେ ତୁମ ମସ୍ତକ ସ୍କନ୍ଧଚ୍ୟୁତ ହେବ, ଜାଣିଥାଅ । ଅତଏବ ସାବଧାନ !

ରଥଚାଳକ ଆଖି ଲାଲ୍ କରି ଉତ୍ତର ଦେଲା, "ତୁମେ ଜାଣ ମୁଁ କିଏ ? ମହାନ୍ ଶକ୍ତିଶାଳୀ ମାୟା ସର୍ବେଶ୍ୱରେଶ୍ୱରଙ୍କ ସେବକ । ମୋ ସହ ଏପରି ଧୃଷ୍ଟତା ଆଜଯାଏ କେହି କରି ନ ଥିଲେ । ଏହାର ଫଳ ପାଇବ, ଜାଣିରଖ !"

"ଆହୁରି ଅଧିକ ଧୃଷ୍ଟତା କରିବାକୁ ମୁଁ ପ୍ରସ୍ତୁତ ।" ଏହା କହି ଜୟଶୀଳ ତରବାରି





ତଳେ ରଖି ହାତରେ ରଥଚାଳକର ବେକ ଚିପି ଧରିଲେ । ଚାଳକ ଯନ୍ତ୍ରଣାରେ କାତର ହୋଇ କହିଲା, "ବୁଝିଲି, ତୁମେ ବହୁତ ସାହସୀ ଓ ବଳବାନ୍ ମଧ । ଏଥର ମୋ ବେକ ଛାଡ଼ିଦିଅ ।"

ଜୟଶୀଳ ନିଜ ମୁଠି ଶିଥିଳ କଲେ ଓ କହିଲେ, "ବେଶ୍, ଏଥର ବିନା ବାକ୍ୟବ୍ୟୟରେ ରଥକୁ କୂଳକୁ ନେଇଚାଲ । ତୁମ ମାଲିକକୁ ନେଇ ଆମର ବହୁତ କିଛି କରିବାର ଅଛି ।"

ରଥଚାଳକ ନୀରବରେ ହଂସମାନଙ୍କୁ କୂଳ ଆଡ଼କୁ ଚାଳିତ କଲା । ରଥ କୂଳରେ ଲାଗି-ବାର ଦେଖି ତନ୍ତ୍ରସାଧକ ଅତ୍ୟନ୍ତ ଖୁସି ହୋଇ ନରବାନର ଉପରୁ ତଳକୁ ଡେଇଁପଡ଼ିଲେ । ବାନର ତା' ହାତରେ ଧରିଥିବା ଜଳରାକ୍ଷସର ଦୁଇ କାନ ଧରି ତାକୁ କ୍ରୁଦ୍ଧ କଣ୍ଠରେ ଧମକ ଦେଲେ, "ଶୁଣ ଦୁଷ୍ଟ ! ଯଦି ପଳାଇବା ମତ-ଲବ୍‌ରେ ଥିବୁ, ତେବେ ମରିବୁ ।" ତା'ପରେ ସେ ହଂସରଥ ନିକଟକୁ ଯାଇ କହିଲେ, "ଏ ରଥରେ ବସି ନରବାନର ସହ ଯାଇ ମୁଁ ହିମାଳୟରେ ତପସ୍ୟା କରିବାକୁ ମନ କଲେ ଏହା ମୋତେ ନେଇ ଯାଇପାରିବ ?"

ଜୟଶୀଳ ହସିଉଠି ରଥଚାଳକ ଆଡ଼କୁ ଅନାଇ ତାକୁ ଏ ପ୍ରଶ୍ନର ଜବାବ୍ ଦେବାକୁ ଇସାରା ଦେଲେ ।

ରଥଚାଳକ ଉତ୍ତେଜିତ ଭାବରେ କହିଲା, "କ'ଣ ପାଇଛ ଏ ରଥକୁ ? ଏହାର ଶକ୍ତି ତୁମେ କଳ୍ପନା କରିପାରିବ ନାହିଁ । ହଂସମାନେ ଖାଲି ଅଳଙ୍କାର ରୂପେ ଯୋଖା ହୋଇଛନ୍ତି । ଆମ ମାୟା ସର୍ବେଶ୍ୱର ଚାହିଁଲେ ପଲକରେ ଏଥିରେ ବସି ପୃଥିବୀ ପରିକ୍ରମା କରିପାରିବେ । ମୋ କଥା ବିଶ୍ୱାସ କର ।"

"ହଁ, ହଁ ସେପରି ମହିମା ନ ଥିଲେ ସେଥିରୁ ସ୍ୱୟଂ ମାୟା ସର୍ବେଶ୍ୱର ଗଳିପଡ଼ିଥାନ୍ତେ ? ହଇହେ, ତୁମେ ଆମ ଆଗରେ ଏମିତି ଫୁଟାଣି ନ କାଢ଼ିଲେ ଚଳନ୍ତା ନାହିଁ ?" ତନ୍ତ୍ରସାଧକ ନିଜ ଶୂଳ ଉଞ୍ଚାଇ ରଥଚାଳକ ଆଡ଼କୁ ତାଚ୍ଛଲ୍ୟ ସୂଚକ ଦୃଷ୍ଟିରେ ଅନାଇଲେ ।



ଜୟଶୀଳ ତାଙ୍କୁ ଶାନ୍ତ ହେବାକୁ କହିଲେ ଓ ବୁଝାଇଲେ, "ସାଧକ ! ରଥରୁ ଖାଲି ଯେ ସରୋବରେଶ୍ୱର ଗଳିପଡ଼ିଛନ୍ତି, ତାହା ନୁହେଁ, ହିରଣ୍ୟପୁରର ରାଜକୁମାରୀ କାଞ୍ଚନମାଳା ମଧ୍ୟ ପଡ଼ିଯାଇଛନ୍ତି । ସେ କଥା ଆମେ ଭୁଲିଗଲେ ଚଳିବ କି ?"

ମକରକେତୁ ଶଙ୍କିତ କଣ୍ଠରେ କହିଲା, "ଜୟଶୀଳ ! ଆମ ରାଜା ମାୟା ସରୋବରେଶ୍ୱରଙ୍କ ସନ୍ଧାନରେ ବର୍ତ୍ତମାନ ଆମକୁ ଏ ରଥରେ ବସି ବାହାରିବାକୁ ପଡ଼ିବ । ରାଜା କିପରି ବିପଦରେ ପଡ଼ିଛନ୍ତି କିଏ ଜାଣେ !"

"ଖାଲି ତୁମେ ନୁହେଁ ଆମେ ବି ଯିବା ଦରକାର । ରାଜକୁମାରୀ କାଞ୍ଚନମାଳାଙ୍କୁ ଖୋଜିବା ଆମର ଉଦ୍ଦେଶ୍ୟ । ଯଦି ରାଜକୁମାରୀଙ୍କର କୌଣସି ଅନିଷ୍ଟ ହୋଇଥିବ, ସେ ପାଇଁ ତୁମ ଅବିବେକୀ ରାଜାହିଁ ଦାୟୀ ହେବେ, ଜାଣିଥାଅ । ପ୍ରାୟଶ୍ଚିତ୍ତ ଭାବରେ ତାଙ୍କୁ ତାଙ୍କ ମୁଣ୍ଡଟି ହରାଇବାକୁ ପଡ଼ିପାରେ, ଜାଣିରଖ ।" ଜୟଶୀଳ କହିଲେ ।

ଦେବଶର୍ମା ସେ ପର୍ଯ୍ୟନ୍ତ କ'ଣ ଚିନ୍ତା କରୁଥିଲେ । ହଠାତ୍ ସେ ମୁଣ୍ଡ ଟେକି କହିଲେ, "ଜୟଶୀଳ ! ମୁଁ ତୁମକୁ ପୂର୍ବରୁ କହିଥିଲି, ପ୍ରତିଶୋଧ କଥା ଚିନ୍ତା କରିବା ବେଳ ଇଏ ନୁହେଁ । ବର୍ତ୍ତମାନ ଯଥାଶୀଘ୍ର ମାୟା ସରୋବରେଶ୍ୱର ଓ କାଞ୍ଚନମାଳାଙ୍କ ସନ୍ଧାନ ନେବା ଆମର କର୍ତ୍ତବ୍ୟ ।

"ଆପଣ ଠିକ୍ କହୁଛନ୍ତି ବୈଦ୍ୟଦେବ ! ସତକଥା କହିଲେ, ମାୟା ସରୋବରେଶ୍ୱରର କ'ଣ ହାନି ଲାଭ ହୋଇଛି, ସେ ପାଇଁ ମୋର ଚିନ୍ତା ନାହିଁ । ମୋର ଚିନ୍ତା କାଞ୍ଚନମାଳାଙ୍କ ପାଇଁ । ସେ ଯାହା ହେଉ, ତନ୍ତ୍ରସାଧକ ! ଏଥର ଯିବା, ନା କ'ଣ ?" ଜୟଶୀଳ ସ୍ପଷ୍ଟ କଣ୍ଠରେ କହିଲେ ।

ତନ୍ତ୍ରସାଧକ ଥରେ ଚାରିଆଡ଼କୁ ଅନାଇଲେ ଏବଂ ସନ୍ଦେହପୂର୍ଣ୍ଣ କଣ୍ଠରେ କହିଲେ, "ଏ ଦୁର୍ଗମ ଅରଣ୍ୟରେ ସେ ଦୁହିଁଙ୍କ ପତ୍ତା ପାଇବା କିପରି ?"




ପହଞ୍ଚିଯିବୁ । ଏଥର ସମସ୍ତେ ରଥ ଆରୋହଣ କର !" ଦେବଶର୍ମା ଏହା କହି ରଥ ଆଡ଼କୁ ମୁହାଁଇଲେ ।

"ବୈଦ୍ୟଦେବ ! ଏ ସାନ ରଥରେ କ'ଣ ସମସ୍ତଙ୍କ ପାଇଁ ସ୍ଥାନ ହେବ ? ତନ୍ତ୍ରସାଧକ ଓ ତାଙ୍କ ବାହନ କପରି ଯିବେ ? ମକରକେତୁ ବି ତ ତା' ବାହନ ସହ ଆକାଶରେ ଉଡ଼ିପାରିବ ନାହିଁ !" ଜୟଶୀଳ କହିଲେ ।

ଦେବଶର୍ମା ସମସ୍ତଙ୍କ ଆଡ଼କୁ ଥରେ ଅନାଇ ନେଇ କହିଲେ, "ଯେଉଁମାନଙ୍କ ପାଖରେ ବାହନ ରହିଛି, ସେମାନେ ବାହନ ଦ୍ୱାରହିଁ ଯିବା ଠିକ୍ ହେବ । କ'ଣ କହୁଛ ସାଧକ ଓ ମକରକେତୁ ?"

ମକରକେତୁ ତନ୍ତ୍ରସାଧକ ଆଡ଼କୁ ଅନାଇଲା । ସାଧକ ତା' ଆଡ଼କୁ କ୍ଷଣେ ଦୃଷ୍ଟିପାତ କରି କହିଲେ, "ମୁଁ ଭାବୁଛି, ଆମ ବାହନ ଯୋଗେ ଆମେ ସମାନ ଗତିରେ ସ୍ଥଳ ପଥରେ ଯାଇ-ପାରିବୁ । ଅବଶ୍ୟ ରାସ୍ତାରେ ଯଦି ମକରକେତୁ ମୋତେ ଦଗା ଦେବାକୁ ଚେଷ୍ଟା କରିବ, ତେବେ ତାକୁ ଖତମ କରିସାରି ମୁଁ ଯିବି ।"

"ତନ୍ତ୍ରସାଧକ ! ଆପଣ ଅକାରଣେ ରାଗୁଛନ୍ତି । ବର୍ତ୍ତମାନ ଆମେ ସମସ୍ତେ ମିତ୍ର ।" ମକରକେତୁ ହସିବାର ଚେଷ୍ଟା କରି କହିଲା ।

"ଏ କଥା ବେଶ୍ କେତେଥର କହିଲୁଣି । ଯେ ପର୍ଯ୍ୟନ୍ତ ଆମେ ରାଜା କନକାକ୍ଷଙ୍କ ପୁତ୍ର-

ତତ୍କ୍ଷଣାତ୍ ହଂସରଥର ଚାଳକ ତଳକୁ ଡେଇଁପଡ଼ିଲା ଓ ତନ୍ତ୍ରସାଧକ ଆଡ଼କୁ ଆସିଲା । ଅବଶ୍ୟ ନରବାନରକୁ ଦେଖି ସେ କେଇପାଦ ପଛକୁ ହଟିଗଲା; ତଥାପି କହିଲା, "ମହାଶୟ ! ଆମ ରାଜା ଓ କାଞ୍ଚନମାଳା ଯେଉଁ ସ୍ଥାନରେ ପଡ଼ିଗଲେ, ସେ ସ୍ଥାନ ମୁଁ ମନେ ରଖିଛି । ସେଠାରେ ରହିଛି ଗୋଟିଏ ପାହାଡ଼ ଏବଂ ଗୋଟିଏ ଅତ୍ୟନ୍ତ ଉଚ୍ଚ ବୃକ୍ଷ । ପାଖରେ ଅଛି ଗୋଟିଏ ଖୋଲା ପଡ଼ିଆ । ତହିଁ ଭିତରୁ ଧଳା ଧୂଆଁ ଆକାଶକୁ ଉଠୁଛି ।"

"ବେଶ୍ । ତେବେ ଆମେ ଏ ରଥଚାଳକ ସହାୟତାରେ ନିଶ୍ଚେ ସେ ସ୍ଥାନରେ ଅବଳମ୍ବେ

କନ୍ୟାଙ୍କୁ ନିଗପଦ ଅବସ୍ଥାରେ ନ ପାଇଛୁ, ସେ ଯାଏ ତୁମେ ଆମ ପକ୍ଷ ।" ଚନ୍ଦ୍ରସାଧକ କହିଲେ ।

ଏହାପରେ ଚନ୍ଦ୍ରସାଧକ ଓ ମକରକେତୁଙ୍କୁ ଛାଡ଼ି ଅନ୍ୟମାନେ ହଂସରଥରେ ବସିଲେ । ରଥ ଚାଳକ ଚନ୍ଦ୍ରସାଧକଙ୍କୁ କହିଲା, "ମନେ ରଖିବ, ସେ ଠାବରେ ଅଛି ଗୋଟାଏ ପାହାଡ଼ ଏବଂ ଗୋଟାଏ ଅତି ଦୀର୍ଘ ବୃକ୍ଷ ।"

ଚାହୁଁ ଚାହୁଁ ହଂସରଥ ଆକାଶ ମାର୍ଗରେ ଅଦୃଶ୍ୟ ହୋଇଗଲା । ଚନ୍ଦ୍ରସାଧକ ନରବାନର କାନ୍ଧରେ ଚଢ଼ି ବସିଲେ ଓ କହିଲେ, "ଚାଲ ମକରକେତୁ । ଆଉ ବିଳମ୍ବ କାହିଁକି !"

ମକରକେତୁ ଜଳଗ୍ରହ ଉପରକୁ କୁଦିପଡ଼ିଲା । ଚନ୍ଦ୍ରସାଧକ ହାତରେ ବନ୍ଦୀ ଥିବା ଜଳ ରାକ୍ଷସ ଭଙ୍ଗା ଗଳାରେ କହିଲା, "ହେ ମହା ବୀର ! ଆପଣଙ୍କ ସେବକ ରୂପେ ମୋତେ ସାଥିରେ ନିଅନ୍ତୁ । ଏଣିକି ମୁଁ ଆପଣଙ୍କ ଅନୁଗତ ହୋଇ ରହିଥିବି ।"

ଚନ୍ଦ୍ରସାଧକ ଏହା ଶୁଣି ପ୍ରୀତ ହେଲେ ଓ କହିଲେ, "ଆରେ ଜଳରାକ୍ଷସ ! ତୁ କ'ଣ ନର-ବାନର ସହ ତାଳ ଦେଇ କ୍ଷିପ୍ର ଗତିରେ ଚାଲି ପାରିବୁ ?"

ହଜୁର୍ ! ମୋର ପକ୍ଷ ନାହିଁ ଠିକ୍, କିନ୍ତୁ ପକ୍ଷୀ ଯେମିତି ଆକାଶରେ ଉଡ଼େ, ସେତିକି ସହଜରେ ମୁଁ ମାଟି ଉପରେ ଚାଲିପାରେ ।" ଜଳରାକ୍ଷସ ଉତ୍ତର ଦେଲା ।

"ବାଃ, ବାଃ, ଲକ୍ଷେ ଟଙ୍କାର କଥା କହିଲୁ ।"



ଏହା କହି ଚନ୍ଦ୍ରସାଧକ ଜଳରାକ୍ଷସର କାନ୍ଧ ଆପୁଡ଼ାଇ ଦେଲେ ଓ ନରବାନରକୁ ଯିବାପାଇଁ ନିର୍ଦ୍ଦେଶ ଦେବାକୁ ଉଦ୍ୟତ ହେଲେ । ସେତିକି-ବେଳେ ବାମନ ଜାତିର ସେନାପତି ତା'ର କେତେକ ଅନୁଚରଙ୍କ ଗହଣରେ ମେଣ୍ଢା ଉପରେ ସବାର୍ ହୋଇ ସେଠାରେ ପହଞ୍ଚିଲା ।

"କହୋ, ବୀର ବାମନ ସେନାପତି ! କି ସମ୍ବାଦ !" ଚନ୍ଦ୍ରସାଧକ ପ୍ରଶ୍ନ କଲେ ।

ନଦୀକୂଳରେ ପଡ଼ି ଛଟପଟ ହେଉଥିବା ଜଳରାକ୍ଷସମାନଙ୍କ ଆଡ଼କୁ ସଙ୍କେତ କରି ବାମନ ସେନାପତି କହିଲା, "ଆମେ ଉହାଡ଼ରେ ରହି ସବୁ ଦେଖୁଥିଲୁ । ବର୍ତ୍ତମାନ ପ୍ରଶ୍ନ ହେଲା, ଏ ହେଟାମୁଣ୍ଡିଆ ରାକ୍ଷସମାନଙ୍କ ପ୍ରତି କି ପ୍ରକାର ବ୍ୟବହାର କରିବୁଁ ? ଏମାନଙ୍କର ଚିକିତ୍ସା କରିବୁଁ ତ ?"

"ନିଶ୍ଚୟ, ଚିକିତ୍ସା କର । ତେବେ ସୁସ୍ଥ ହେବା ମାତ୍ରେ ଏମାନେ ତୁମମାନଙ୍କୁ ଧରି ଆହାର କରି ନ ପକାଇଲେ ରକ୍ଷା ।" ଚନ୍ଦ୍ରସାଧକ କହିଲେ ।

ସେତିକିବେଳେ ବାମନ ସେନାପତି ନଦୀ ସେପାରି ଜଙ୍ଗଲ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ବିସ୍ମୟଭରା କଣ୍ଠରେ କହିଲା, "ହଜୁର୍ ! ଦେଖନ୍ତୁ, ଶୂନ୍ୟକୁ କିପରି ଧଳା ଧୂଆଁ ଉଠୁଛି । ଜଙ୍ଗଲରେ କ'ଣ ନିଆଁ ଲାଗିଯାଇଛି ?"

"ନା, ତେବେ ଏ ଧୂଆଁ ପଛରେ କିଛି ନା କିଛି ରହସ୍ୟ ରହିଛି । ଯିବା, ଦେଖିବା ।" ଏହା କହି ଚନ୍ଦ୍ରସାଧକ ନିଜ ବାହନ ନରବାନରକୁ ଅଗ୍ରସର ହେବାକୁ ହୁକୁମ ଦେଲେ ।

ନରବାନର ଥରେ ଗୋଟାଏ ବିକଟ ଚିତ୍କାର କରି ତା'ପରେ ବଣ ଭିତରକୁ ମାଡ଼ିଚାଲିଲା । ପଛରେ ଚାଲିଲେ ଜଳରାକ୍ଷସ ଓ ଜଳଗ୍ରହ ଉପରେ ସବାର୍ ହୋଇଥିବା ମକରକେତୁ । ଆଗରେ ଥିଲା ଘନ ଅରଣ୍ୟ ।

(କ୍ରମଶଃ)






# ଭବିଷ୍ୟତ ବାଣୀ

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷ ପାଖକୁ ଲେଉଟି ଆସିଲେ ଏବଂ ବୃକ୍ଷ ଶୀର୍ଷରୁ ଝୁଲନ୍ତ ଶବଟିକୁ ଉତାରି ଆଣି କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଉଦ୍ୟତ ହେଲେ । କେଇ ମୁହୂର୍ତ୍ତ ପରେ ହଠାତ୍ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ହୁଏତ କୌଣସି ବିଶେଷ ଶକ୍ତି ଲାଭ କରିବା ମାନସରେହିଁ ଏ ଝଡ଼ ରାତିରେ ଏ ଭଳି ଝୁଙ୍କିପ୍ରଦ କାମରେ ହାତ ଦେଇଛ । କିନ୍ତୁ ଜାଣିରଖ, କେବଳମାତ୍ର ଦୁଃସାହସିକ ପନ୍ଥାରେ ଯେ ସିଦ୍ଧିଲାଭ ହୁଏ, ତାହା ନୁହେଁ, ଥରେ ଥରେ ଦେଖାଯାଏ, ଜଣେ ଜଣେ ସାଧାରଣ ଲୋକଙ୍କ ଭିତରେ ଆପେ ଆପେ ଅସାଧାରଣ ଶକ୍ତି ଲୁଚି ରହିଥାଏ । ଗୋଟାଏ ଉଦାହରଣ ଦେଲେ ମୋ ବକ୍ତବ୍ୟ ସ୍ପଷ୍ଟ ହୋଇଯିବ । ଶୁଣ ତେବେ ଗୋଟିଏ

## ବେତାଳ କଥା



କାହାଣୀ । ଶୁଣିଲେ ଶ୍ରମ ଲାଘବ ମନେ ହେବ ।"

ବେତାଳ ଗପିବାକୁ ଲାଗିଲା : ଗୋଟିଏ ଗାଁରେ ଥିଲା ଜଣେ ଗରିବ ଲୋକ । ଦୁନିଆରେ ତା'ର କେହି ନ ଥିଲେ । ସେ ପ୍ରତିଦିନ ନଈରେ ବୁଡ଼ଟାଏ ପକାଇସାରି ପାର୍ଶ୍ୱବର୍ତ୍ତୀ ଏକ ଶିବ ମନ୍ଦିରରେ ଯାଇ ବସିରହେ । ମନ୍ଦିରାଗତ ଭକ୍ତମାନେ କେହି ତାକୁ କିଛି ଦେଲେ ଖାଏ, ନ ହେଲେ ନାହିଁ । ଯେଉଁଦିନ କିଛି ଆହାର ମିଳିଯାଇଥାଏ, ତା'ପରେ ଆଉ କେହି କିଛି ଯାଚିଲେ ସେ ନିଏ ନାହିଁ ।

ଦିନେ ଜଣେ ଧନିକ ସସ୍ତ୍ରୀକ ମନ୍ଦିରକୁ ଆସିଲେ । ସେ ମନ୍ଦିର ଭିତରେ ପଶିଲାବେଳେ ଗରିବ ଆଡ଼କୁ କଦଳୀଟାଏ ଫିଙ୍ଗିଦେଲେ । କିନ୍ତୁ ସେ ଦିନ ଗରିବ ଆଗରୁ ଖାଇସାରିଥାଏ । ଧନିକ ମନ୍ଦିରରୁ ଫେରିବା ବେଳକୁ ସେ କଦଳୀଟି ତାଙ୍କୁ ଫେରାଇ ଦେଇ କହିଲା, "ଆପଣଙ୍କ ସ୍ତ୍ରୀ ଏହାକୁ ଖାଇଦିଅନ୍ତୁ । ଆପଣଙ୍କ ମନସ୍କାମ ପୂର୍ଣ୍ଣ ହେଉ ।"

ଧନିକ ନିଃସନ୍ତାନ ଥିଲେ । ସନ୍ତାନ କାମନାରେ ସେ ମନ୍ଦିରକୁ ଆସୁଥିଲେ । ସେ ପଚାରିଲେ, "ମନସ୍କାମନା କେବେ ପୂର୍ଣ୍ଣ ହେବ ?" ଗରିବ ଉତ୍ତର ଦେଲା, "ଭଗବାନ ଦୟା କଲେ ବର୍ଷକ ଭିତରେ ।"

ବର୍ଷକ ଭିତରେହିଁ ଧନିକଙ୍କର ସନ୍ତାନ ହେଲା । ସେ ଏହାକୁ ସେ ଗରିବର ଆଶୀର୍ବାଦ ବୋଲି ମନେକଲେ ଏବଂ ମନ୍ଦିର ନିକଟକୁ ଯାଇ ଗରିବ ଆଗରେ ହାତଯୋଡ଼ି ଠିଆହୋଇ କହିଲେ, "ମହାତ୍ମା ! ଆପଣଙ୍କ ଆଶୀର୍ବାଦରେ ମୋର ପୁତ୍ରଲାଭ ହୋଇଛି । ଆପଣ ଯାହା ଚାହିଁବେ, ମୁଁ ତାହା ଦେବି ।"

ଗରିବ ଉତ୍ତର ଦେଲା, "ମୋର କିଛି ଲୋଡ଼ା ନାହିଁ । କିନ୍ତୁ ତୁମେ ତୁମ ଦୁଷ୍କର୍ମମାନ ଛାଡ଼ିଦିଅ । ଅନ୍ୟାୟରେ ଲୋକଙ୍କ ସମ୍ପତ୍ତି ମାରିନେବା, ଲୋକଙ୍କୁ ଠକିବା ଇତ୍ୟାଦି ଛାଡ଼ିଦେଲେ ଯାଇ ତୁମ ପୁଅ ଭଲରେ ରହିବ । ଯାଅ ।"

ଧନିକ ଘରକୁ ଫେରି ନିଜ ଆଚରଣ ବଦ-

ନାଇଲେ । ଯେଉଁମାନଙ୍କୁ ଠକିଥିଲେ, ଯେତେ-ଦୂର ସମ୍ଭବ ସେମାନଙ୍କୁ କ୍ଷତିପୂରଣ ଦେଲେ । ତେଣିକି ଆଉ ଅନ୍ୟାୟ ଉପାୟରେ ଅର୍ଥ ଉପାର୍ଜନରେ ମାତିଲେ ନାହିଁ ।

ବେତାଳ କାହାଣୀଟି ଏହିଠାରେ ଶେଷ କରି ପଚାରିଲା, "ରାଜା ! ଗିରିବରି ପ୍ରକୃତରେ ଜଣେ ମହାତ୍ମା, ଯୋଗୀ ? ତାର ଭବିଷ୍ୟତ୍ ବାଣୀ ଅନୁସାରେ ନ ହେଲେ ବର୍ଷକ ଭିତରେ ଧନିକଙ୍କର ପୁତ୍ରଲାଭ ବା କିପରି ହୁଅନ୍ତା, ତା' କଥାର ପ୍ରଭାବରେ ତାଙ୍କ ସ୍ୱଭାବ ବା କିପରି ବଦଳିଯାଆନ୍ତା ? ଏ ପ୍ରଶ୍ନର ଉତ୍ତର ଦିଅ । ଯଦି ଉତ୍ତର ଜାଣିକରି ମଧ୍ୟ ନୀରବ ରହିବ, ତେବେ ତୁମର ଶିର ହେବ ସ୍କନ୍ଧଚ୍ୟୁତ ।"

ରାଜା ବିକ୍ରମାର୍କ ଉତ୍ତର ଦେଲେ : "ଗିରିବରି ଯୋଗୀ ନ ଥିଲା, ଥିଲା ଜଣେ ସାଧୁ ପ୍ରକୃତିର ଲୋକ । ସେ ନିଜ ନିୟମ ଅନୁସାରେ ଥରେ ଖାଇସାରିଥିବା ହେତୁ କଦଳୀଟି ଫେରାଇ ଦେଇଥିଲା । ମନସ୍କାମ ପୂର୍ଣ୍ଣ ହେଉ ବୋଲି ସେ କହିଥିଲା—ସାଧାରଣ ଶୁଭେଚ୍ଛା ବୋଧ ହେତୁ । କାରଣ ମନ୍ଦିରକୁ ଆସୁଥିବା ଲୋକେ ସଚରାଚର ନାନାଦି ବାଞ୍ଛା ନେଇ ଆସନ୍ତି । ବର୍ଷକ ଭିତରେ ଧନିକଙ୍କ ସନ୍ତାନ ହେବ ବୋଲି ସେ ନିଜ ଭବିଷ୍ୟତବାଣୀ କରି ନ ଥିଲା । ସେ କହିଥିଲା ଭଗବାନ ଦୟାକଲେ ତାହା ହୋଇପାରେ !

ଧନିକର ସ୍ୱଭାବ ଯେ ବଦଳିଗଲା, ତାହା ଗିରିବରିର କଥାର ପ୍ରଭାବ ହେତୁ ନୁହେଁ, ନିଜ ପୁଅର ଅମଙ୍ଗଳ ହେବା ଆଶଙ୍କାରେ ।

ସେ ଯାହା ହେଉ, ସତ୍ ଲୋକଙ୍କ ଉପରେ ଭଗବତ୍ କୃପା ଥାଏ । ତେଣୁ ଗିରିବରିର ଅଜ୍ଞାତସାରରେ ତା' ଉପରେ ଭଗବତ୍ କୃପା ଥିଲା ବୋଲି କୁହାଯାଇପାରେ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁଣି ଗଛ ଡାଳରେ ଝୁଲିପଡ଼ିଲା । (କଳ୍ପିତ)



# ଦାଗ !

କମଳ ଥିଲା ଭାରି ଦୁଷ୍ଟ ପିଲା । ସେ ସବୁବେଳେ କିଛି ନା କିଛି ଦୁଷ୍ଟାମି କରୁଥାଏ । ତା' ବାପା ତାକୁ ଭୟ ଦେଖାଇ ବାଟକୁ ଆଣିବା ପାଇଁ ବହୁତ ଚେଷ୍ଟା କଲେ । କିନ୍ତୁ ଲାଭ ହେଲା ନାହିଁ ।

ବାପା ଶେଷକୁ ଆଉ କିଛି ନ କରି ଯେତେବେଳେ କମଳ କୌଣସି ଦୁଷ୍ଟାମି କରେ, ସେତେବେଳେ ଠାକୁର ଘର କବାଟରେ ଗୋଟାଏ କଣ୍ଟା ବାଡ଼େଇ ଦେବାକୁ ଲାଗିଲେ । କ୍ରମେ କ୍ରମେ ସାରା କବାଟ କଣ୍ଟାରେ ଭର୍ତ୍ତି ହୋଇଗଲା ।

ହଠାତ୍ କମଳର ସ୍ୱଭାବ ବଦଳି ଗଲା । ସେ ଦୁଷ୍ଟାମି ଛାଡ଼ି ଦେବା ସଙ୍ଗେ ସଙ୍ଗେ ତା' ବାପାକୁ ନାନା କାମରେ ସାହାଯ୍ୟ ଦେବାକୁ ଲାଗିଲା । କମଳ ଯେତେବେଳେ ଭଲ କାମଟିଏ କରେ, ତା' ବାପା କବାଟରୁ ଗୋଟାଏ କଣ୍ଟା ବାହାର କରି ଦିଅନ୍ତି । ବର୍ଷକ ଭିତରେ କବାଟ ଖାଲି ହୋଇଗଲା ।

ଯେଉଁ ଦିନ ବାପା ଶେଷ କଣ୍ଟା କାଢ଼ୁଛନ୍ତି, କମଳ ହଠାତ୍ କାନ୍ଦ କାନ୍ଦ ହୋଇ କହିଲା, "ବାପା, କଣ୍ଟା ସିନା ବାହାର କରି ଦେଲ, ଦାଗ କିନ୍ତୁ ରହିଗଲା !"

ହଁ, ପୁଅ । ଦୁଷ୍ଟାମି ଛାଡ଼ିଲେ ବି ସ୍ମୃତି ରହିଯାଏ । ତେଣୁ ଦୁଷ୍ଟାମି ମୂଳରୁ ନ କରିବା ହିଁ ସବୁଠୁଁ ଭଲ ।" ବାପା କହିଲେ ।





# ଚିକିତ୍ସା

କୁବେର ଥିଲା ଗୋଟିଏ ଧନିବାନ୍ ଘରର ଭେଣ୍ଡିଆ ପୁଅ । ତା'ର କୌଣସିଥିରେ ଅଭାବ ନ ଥାଏ । କିନ୍ତୁ ତା' ଦେହ ଭଲ ରହୁ ନଥାଏ । ଦେହକୁ ସୁସ୍ଥ ସବଳ କରିବା ପାଇଁ ସେ ଯେ କେତେ ପ୍ରକାର ଔଷଧ ସେବନ କରୁଥାଏ ତା'ର ହିସାବ ନାହିଁ । କିନ୍ତୁ କିଛିଲାଭ ହେଉ ନଥାଏ । ତେଣୁ ତା' ମନ ଭଲ ରହୁ ନ ଥାଏ !

କୁବେରର ଜଣେ ବନ୍ଧୁ ଥାଏ । ନାମ ସୁଧୀର । ଥରେ ସେ କୌଣସି- କାମରେ କୁବେର ଗାଁକୁ ଆସି କୁବେର ଘରେ ସ୍ଥିର ପାଞ୍ଚଦିନ ରହିଗଲା । ସୁଧୀର ବୈଦ୍ୟ ନ ହେଲେ ବି ତା'ର ସାଧାରଣ ଜ୍ଞାନ ବହୁତ ବୋଲି କୁବେର ଜାଣିଥିଲା । ସେ ତେଣୁ ବନ୍ଧୁକୁ ନିଜ ସ୍ୱାସ୍ଥ୍ୟ ଭଲ ରହୁ ନ ଥିବା କଥା କହି ସେ କୌଣସି ଔଷଧ ବରାଦ କରିପାରିବ କି ବୋଲି ପଚାରିଲା ।

ସୁଧୀର ଔଷଧ କଥା ପରେ ଜଣାଇବ କହି ପ୍ରଥମେ କୁବେରର ଦୈନନ୍ଦିନ କାର୍ଯ୍ୟକ୍ରମ ଲକ୍ଷ୍ୟ କଲା । କୁବେର ସକାଳେ ଜଳଖିଆ କରିସାରି ନିଜ ବ୍ୟବସାୟର ହିସାବପତ୍ର ତନଖିବାକୁ ବସିଯାଏ । ମଝିରେ ଥରେ ଫଳରସ ଗିଲାସେ ପିଏ । ଆଉ କିଛି ସମୟ କାମ କରି ଦିବାହାର କରେ । ତା'ପରେ ଶୋଇ ପଡ଼େ । ଅପରାହ୍ଣରେ ଉଠି ନିଜ କର୍ମଚାରୀମାନଙ୍କଠାରୁ ବ୍ୟବସାୟର ହିସାବ ନିଏ । ସନ୍ଧ୍ୟାବେଳେ ବାପାଙ୍କୁ ସବୁ ହିସାବ ଦେଖାଏ ଓ ତାଙ୍କ ସହ ପରାମର୍ଶ କରେ । ନୈଶାହାର ପରେ ଶୋଇବାକୁ ଗଲାବେଳେ ଆଉ ଗିଲାସେ ଫଳରସ ପିଏ ।

ସବୁ ଦେଖି ସାରି ସୁଧୀର କହିଲା, "ତୁମ ରୋଗ କ'ଣ ମୁଁ ବୁଝିଛି !"

"ଭାଇ ସୁଧୀର ! ତୁମେ କ'ଣ ବୁଝିଛ ମୁଁ ଜାଣେନା । କିନ୍ତୁ ମୁଁ ନିଶ୍ଚିତ ଯେ ମୋ ଭିତରେ କିଛି ଶକ୍ତ ବେମାର ଦେଖା ଦେଇଛି । ମୋତେ



, ଆଜି କାଲି ସୁସ୍ୱାଦୁ ଫଳରସ ମଧ୍ୟ ଭଲ ଲାଗୁ ନାହିଁ । ଏହିପରି ରୋଗ ଭୋଗି ଭୋଗି ସାରା ଜୀବନ ଚାଲିଯିବ ପରା !"

ସୁଧୀର ହସି ଉଠି କହିଲା, "ଭାଇ, ତୁମେ ଏମିତି ହତାଶ ହେବାର ହେତୁ ନାହିଁ । ତୁମ ରୋଗର ଔଷଧ ଅଛି । କିନ୍ତୁ ସଙ୍ଗେ ସଙ୍ଗେ ଜଳବାୟୁ ବଦଳିବା ବି ଦରକାର । ତୁମେ ମାସକ ପାଇଁ ଆମ ଗାଁକୁ ଚାଲ । ତୁମକୁ ଚିକିତ୍ସା କରି ଠିକ୍ କରିଦେବି ।"

ସୁଧୀର କଥାରେ କୁବେରର ବିଶ୍ୱାସ ଆସିଲା । ସେ ବାପାଙ୍କ ଅନୁମତି ନେଇ ସୁଧୀର ସହ ଗଲା ।

ସୁଧୀର ଗାଁରେ ନାନାବିଧ ଗୀତ, ବାଦ୍ୟ ଏବଂ ଅଭିନୟ ହୁଏ । ସେସବୁ କୁବେରକୁ ଖୁବ୍ ଭଲ ଲାଗିଲା । ପ୍ରତିଦିନ ସନ୍ଧ୍ୟାରେ ସେ ତା' ବନ୍ଧୁ ସହ ସେସବୁ ଉପଭୋଗ କରେ ।

କୁବେର ଭିତରେ ସେସବୁ ମନୋରଞ୍ଜନ କାର୍ଯ୍ୟକ୍ରମ ପ୍ରତି ଉତ୍ସାହ ଦେଖି ସୁଧୀର କହିଲା, "ଆମ ଗାଁର ଜଳବାୟୁ ତୁମର ଉପକାର କରୁଛି, ସନ୍ଦେହ ନାହିଁ ।"

"ହଁ, ଭାଇ, ମୁଁ ଆଗ ଭଳି ଏତେ ମାନ୍ଦା ଅନୁଭବ କରୁ ନାହିଁ ।" କୁବେର କହିଲା ।

"ଆଉ ଗୋଟାଏ ବଡ଼ ଖବର । ଆଜି ମୁଁ ହଠାତ୍ ଜଣେ ସାଧୁଙ୍କୁ ଭେଟିଲି । ତୁମ ସ୍ୱାସ୍ଥ୍ୟହାନିର ପ୍ରତିକାର ପାଇଁ ସେ ଗୋଟାଏ ଅମୋଘ ଔଷଧ ବତାଇ ଦେଇଛନ୍ତି । ବଣ ଭିତରେ ଅଛି ଏକ ପ୍ରକାର ଗଛ । ତାହାର ଚେର ଖାଇବାକୁ ପଡ଼ିବ । କିନ୍ତୁ ତୁମେ ନିଜେ ଯାଇ ସେ ଗଛ ଉପାଡ଼ିବା ଦରକାର । ତୁମର ଆପତ୍ତି ନ ଥିଲେ ଚାଲ ବର୍ତ୍ତମାନ ବାହାରି ଯିବା ।" ସୁଧୀର କହିଲା ।

"ଯେଉଁଥିରେ ମୋ ବେମାର ଭଲ ହେବ, ତାହା କରିବା ପାଇଁ ଆପତ୍ତି କରିବି କିପରି ?" କୁବେର ଉତ୍ତର ଦେଲା ।

"ବେଶ୍, ଭଲ କଥା ।" ସୁଧୀର କହିଲା ।

ଦୁଇ ମିତ୍ର ତହୁଁ ବାହାରି ଗଲେ । ସୁଧୀର ଚଞ୍ଚଳ ଗତିରେ ବାଟ ଚାଲୁଥାଏ । କୁବେର କିନ୍ତୁ ଥକାପଡ଼ି ମଝିରେ ମଝିରେ ରହିଯାଉଥାଏ ।

"ଆରେ ଭାଇ, ତୁମେ ତ ମୋହରି ବୟସର । ଥକି ପଡ଼ୁଛ କାହିଁକି ?" ସୁଧୀର କୁବେରକୁ ତାଗିଦା ଦେଉଥାଏ ।

"ମୋ ସ୍ୱାସ୍ଥ୍ୟ ତୁମ ଭଳି ହୋଇଥିଲେ ମୁଁ କପରି ବାଟ ଚାଲନ୍ତି ଦେଖନ୍ତ !" କୁବେର ଉତ୍ତର ଦେଉଥାଏ ।

ତୁମ ସ୍ୱାସ୍ଥ୍ୟ ଭଲ କରିବା ଉଦ୍ଦେଶ୍ୟରେହିଁ ତ ଏ ଯାତ୍ରା । ତୁମେ ଶୀଘ୍ର ନ ଚାଲିଲେ ଆମେ ସନ୍ଧ୍ୟା ପୂର୍ବରୁ ଘରକୁ ଫେରିବା କପରି ?"

ଏଥର କୁବେର ତରତରରେ ବାଟ ଚାଲିଲା । ଦୁହେଁ ଦୁଇପହର ବେଳକୁ ବଣ ଭିତରେ ପହଞ୍ଚିଲେ । ସୁଧୀର ଗୋଟିଏ ଚାରା ଗଛ ଦେଖାଇ କହିଲା, "ଏଇ ହେଲା ସେ ଔଷଧ ଗଛ । ତୁମେ ଏହାକୁ ଉତ୍ପାଟନ କର ।"

କୁବେର ଦୁଇ ହାତରେ ଗଛକୁ ଧରି ବହୁ କଷ୍ଟରେ ତାକୁ ଉତ୍ପାଟିତ କଲା । ସୁଧୀର ସେ ଗୋଟିକୁ ଝରଣା ପାଣିରେ ଧୋଇ ବନ୍ଧୁକୁ ତା'ର ରସ ପିଆଇଲା ।

"ଚାଲ, ଏଥର ଫେରିବା ।" ସୁଧୀର କହିଲା ।

"କିନ୍ତୁ ଭାଇ, ମୋତେ ବଡ଼ ଭୋକ । କିଛି ପେଟରେ ନ ପକାଇ ବାଟ ଚାଲିବା ମୋ ପକ୍ଷରେ ଅସମ୍ଭବ ।" କୁବେର କହିଲା ।

"ଆରେ ଭାଇ, ତୁମକୁ ଆଜିକାଲି ସେମିତି ବେଶୀ ଭୋକ ଲାଗେ ନାହିଁ ବୋଲି ମୁଁ ସାଥିରେ କିଛି ଖାଇବା ଜିନିଷ ଆଣିଲି ନାହିଁ । ତେବେ ନିକଟରେ ଗୋଟିଏ ଭିଲ୍ ବସ୍ତି ଅଛି । ଚାଲ, ସେଠାରେ ଯାହା ମିଳିବ ଖାଇବା ।" ସୁଧୀର କହିଲା ।

ଦୁହେଁ ଚାଲି ଚାଲି ଯାଇ ଭିଲ୍ ବସ୍ତିରେ ପହଞ୍ଚିଲେ । ସେତେବେଳକୁ କୁବେରକୁ ଆହୁରି ହାଲିଆ ଲାଗିଲାଣି । ଭିଲ୍ ସର୍ଦ୍ଦାର ସେମାନଙ୍କୁ ସ୍ୱାଗତ କରି ମୋଟା ଚାଉଳର ଭାତ ଓ କିଛି ପରିବା ସିଝା ଖୁଆଇଲା । ଭୋକିଲା କୁବେରକୁ



ତାହା ଅମୃତ ଭଳି ସୁଆଦିଆ ଲାଗିଲା । ସେ ପେଟ ଭରି ଖାଇଲା ।

ତା'ପରେ ଦୁହେଁ ଶୋଇଗଲେ । ବେଳ ରହୁରହୁ ସେମାନଙ୍କ ନିଦ ଭାଙ୍ଗିଲା । କୁବେର କହିଲା, "ଭାଇ, ଜୀବନରେ ଏଡ଼େ ଭଲ ନିଦ ମୋତେ କେବେ କାହିଁ ହୋଇ ନ ଥିଲା । ସେ ଔଷଧ ନିଶ୍ଚୟ ଖୁବ୍ କାମ ଦେଉଛି ।"

ସେମାନେ ଆସି ଘରେ ପହଞ୍ଚିବା ବେଳକୁ ପୁଣି ଗୁଡ଼ାଏ ପରିଶ୍ରମ ହୋଇଥାଏ । ଖାଇପିଇ ଦୁହେଁ ଶୋଇଲେ । ରାତିରେ ମଧ୍ୟ କୁବେରକୁ ଖୁବ୍ ଗଭୀର ନିଦ ହେଲା ।

ସକାଳେ ସୁଧୀର କହିଲା, "କୁବେର ! ଏଥର ତୁମେ ସୁସ୍ଥ । ଏଣିକି ତୁମର ପ୍ରକୃତ ରୋଗ ଓ ତା'ର ଚିକିତ୍ସା କଥା କହେଁ । ଖାଦ୍ୟରେ ରୁଚି ହେବା ପାଇଁ ପ୍ରଥମେ ଭୋକ ହେବା ଦରକାର । ଭୋକ ପାଇଁ ଲୋଡ଼ା ପରିଶ୍ରମ । ପରିଶ୍ରମ ନ ହେଲେ ନିଦ ବି ଭଲ ହେବ ନାହିଁ । ଇଏ ଗଲା ଦେହର କଥା । ଦେହ ସହ ମନର ଗଭୀର ସମ୍ପର୍କ । ମନକୁ ତାଜା ରଖିବାକୁ ହେଲେ କୌଣସି ସାଂସ୍କୃତିକ ବିଷୟରେ ଆଗ୍ରହ ଥିବା ଦରକାର । ଆମର ଏଠାରେ ନୃତ୍ୟ ବାଦ୍ୟ ଉପଭୋଗ କରି ତୁମ ମନ ତାଜା ହେଲା । ବଣକୁ ବୁଲି କରି ଯାଇ ଭୋକ ହେଲା । ଭୋକ ଯୋଗୁଁ ମୋଟା ଚୂଡ଼ାଭଜା ବି ଭଲ ଲାଗିଲା । ନିଦ ବି ସେଇଥି ସକାଶେ ଗାଢ଼ ହେଲା । ତୁମେ ଘରେ ଯେମିତି ଚଳ, ସେଥିରେ ପରିଶ୍ରମର ସୁଯୋଗ ନାହିଁ କି ସାଂସ୍କୃତିକ ମନୋରଞ୍ଜନର ବ୍ୟବସ୍ଥା ନାହିଁ । ଦେହ ମାନ୍ଦା ନ ଲାଗିବ କାହିଁକି ?" ମୁଁ ପ୍ରଥମରୁ ଏକଥା କହିଥିଲେ ତୁମେ ପରତେ ଯାଇ ନ ଥା'ନ୍ତ । ତେଣୁ ଏଠାକୁ ନେଇ ଆସି ଔଷଧ ସଂଗ୍ରହ ନାମରେ ତୁମକୁ ପ୍ରକୃତ କଥା ବୁଝାଇ ଦେଲି ।"

କୁବେର ସବୁ ବୁଝିଲା । ଘରକୁ ଫେରି ଯାଇ ସେ ନିଜ ଦୈନନ୍ଦିନ କାର୍ଯ୍ୟକ୍ରମ ବଦଳାଇ ଦେଲା । ସେ ସବୁଦିନେ ବ୍ୟାୟାମ କରେ । ଗାଁରେ ଗୋଟିଏ ସାଂସ୍କୃତିକ କେନ୍ଦ୍ର ଖୋଲି ସେଥିରେ କିଛି ସମୟ ଦିଏ । ସେ ବର୍ତ୍ତମାନ ଦେହ ମନ ସବୁଥିରେ ଜଣେ ଆଦର୍ଶ ଯୁବକ ।





# ଦୁଇ ବନ୍ଧୁ-ପୁତ୍ର

ଭୂପତିର ଥିଲି ବହୁତ ଭୂସମ୍ପତ୍ତି । ସେ ଫଳ-ମୂଳ ଓ ନାନାଦି ଫସଲ ଉପୁଜାଇ ସୁଖ ସମୃଦ୍ଧିରେ କାଳ କାଟୁଥାଏ । ବଡ଼ କୋଠାଟାଏ ମଧ୍ୟ ବନାଇଥାଏ । ତା'ର ଗୋଟିଏ ବୋଲି ପୁଅର ନାମ ଶ୍ରୀପତି ।

ଭୂପତି ନିଜ ଗାଁ ଛାଡ଼ି କେବେ କୁଆଡ଼େ ଯାଇ ନ ଥିଲି । ଥରେ କିନ୍ତୁ ଶ୍ରୀପତି ଜିଗର ଲଗାଇବାରୁ ବାପପୁଅ ଦୁହେଁ ରାଜଧାନୀକୁ ଗଲେ । ହଠାତ୍ ସହରର କେନ୍ଦ୍ରସ୍ଥଳରେ ଏକ ରମଣୀୟ ଅଟ୍ଟାଳିକା ସେମାନଙ୍କର ଦୃଷ୍ଟିଗୋଚର ହେଲା । ସାରା ସହରରେ ସେଭଳି ଘର ଦିଶୁ ନ ଥିଲା । ସେମାନେ ଜଣକୁ ପଚାରିଲେ, "ଏ ଘର କାହାର ?" ଉତ୍ତର ହେଲା "ମାଣିକ୍ୟ ବର୍ମାଙ୍କର ।"

ଭୂପତି ମୁହଁରୁ ବାହାରିପଡ଼ିଲା, "ପୋତା ଧନରେ ମୋର ଅଂଶୀଦାର ମାଣିକ୍ୟ ବର୍ମା ନୁହେଁ ତ ?"

"ପୋତା ଧନରେ ଆପଣଙ୍କ ଅଂଶୀଦାର କିଏ ମୁଁ ତ ଜାଣିନାହିଁ ।" ଶ୍ରୀପତି ବିସ୍ମୟ ପ୍ରକାଶ କରି କହିଲା ।

ଭୂପତି ଉତ୍ତର ଦେଲା, ପିଲାବେଳେ ମୁଁ ଥିଲି ଅନାଥ । ଏଣେ ତେଣେ ବାର ଦୁଆର ବୁଲି କାମ ଦାମ କରିଦେଇ ପେଟ ପାଳୁଥାଏ । ମାଣିକ୍ୟ ବର୍ମା ବି ସେମିତି ଥିଲା ଛେଉଣ୍ଡ ପିଲା-ଟାଏ । ସେ ମୋର ସାଙ୍ଗ ହୋଇଥାଏ । ଗାଁ କଡ଼ରେ ଜଣେ ଜମିଦାରଙ୍କ କୋଠା ଥାଏ । ଥରେ ଜମିଦାର ବାହାରକୁ ଯାଇଥିବା ବେଳେ ଝଡ଼ ହେଲା । ବଜ୍ରପାତରେ ସେ କୋଠା ଧସି-ପଡ଼ିଲା ଓ ଜମିଦାରର ପରିବାର ମରିଗଲେ । ଜମିଦାର ଫେରିଆସି ସେ ଦୃଶ୍ୟ ଦେଖି ପାଗଳ

ହୋଇଗଲେ । ସେ ପ୍ରଳାପ କରି ଇତସ୍ତତଃ ବୁଲୁଥାନ୍ତି । ତାଙ୍କ ଘର ଭୂତକୋଠି ଭଳି ଖାଲି ପଡ଼ିଥାଏ ।

ପାଗଳ ଜମିଦାର ଗାଁ ଦାଣ୍ଡରେ ବୁଲି ଯାହାକୁ ଦେଖିଲେ ପଚାରୁଥାନ୍ତି, "ସୁନା ଦରକାର ?" କିନ୍ତୁ ପାଗଳ କଥାରେ କିଏ ମୂଲ୍ୟ ଦେବ ? ବରଂ ପିଲାମାନେ ତା' ଆଡ଼କୁ ଢେଲା ପଥର ଫିଙ୍ଗିବାକୁ ଲାଗିଲେ ।

କିନ୍ତୁ ମାଣିକ୍ୟ ବର୍ମା ଓ ମୁଁ ପାଗଳ ପ୍ରତି ଖୁବ୍ ଭଲ ବ୍ୟବହାର କରୁଥାଉ । ମଝେ ମଝେ ତାଙ୍କ ଭଙ୍ଗା କୋଠିକୁ ଯାଇ ତାଙ୍କସହ ଗପସପ କରୁଥାଉ । ଦିନେ ଆମେ କୋଠି ଭିତରେ ପଶି ଦେଖିଲୁ, ବୁଢ଼ା ମରିବାକୁ ଯାଉଛନ୍ତି । ଆମେ ତାଙ୍କୁ ପାଣି ପିଇବାକୁ ଦେଲୁ । ସେ କହିଲେ, "ଶୁଣ ପିଲାଏ, ଯଦି ତୁମର ସୁନା ଲୋଡ଼ା, ତେବେ ଘର ପଛପଟେ ଥିବା ନିମଗଛ ତଳେ ଖୋଳିବ । ମନେ ରଖ ।" ଆମକୁ ଏଇ ଉପଦେଶ ଦେବାର ଅଳ୍ପ ସମୟ ଭିତରେ ସିଏ ମରିଗଲେ ।

କିଛିଦିନ ପରେ ଦିନେ ଆମେ ଦୁହେଁ ସେ ଗଛ ତଳେ ଖୋଳାଖୋଳି କରି ବାସ୍ତବିକ ମାଠିଆଏ ସୁନା ପାଇଗଲୁ । ଦୁହେଁ ତାକୁ ସମାନ ଦୁଇଭାଗ କରି ବାଣ୍ଟିନେଲୁ ।

ମାଣିକ୍ୟ ବର୍ମା ନିଜ ଅଂଶ ବିନିଯୋଗ କରି ସହରରେ ଆସି ବେପାର ବଣିଜ ଆରମ୍ଭ କଲା । ମୁଁ ଗାଁରେ କ୍ଷେତବାଡ଼ି କିଣି ଗୃହବାସ କଲି ।



ଆମେ ଆଉ ପରସ୍ପରକୁ ଭେଟିନାହୁଁ । କେତେ ବର୍ଷ ବିତିଗଲଣି ।

କଥା କହୁ କହୁ ବାପପୁଅ ମାଣିକ୍ୟ ବର୍ମା ଘର ଫାଟକ ପାଖକୁ ଚାଲିଆସିଥିଲେ । କୋଠା ଉପରୁ ମାଣିକ୍ୟ ବର୍ମା ତା' ମିତକୁ ଚିହ୍ନିପକାଇ ଜଣେ ପରିଚାରକ ପଠାଇ ଦୁହିଁଙ୍କୁ ଭିତରକୁ ଡକାଇ-ନେଲ ।

ଭିତରେ ପଶି ଦୁହେଁ କାବା ହୋଇ ସେ ମହଲର ବିଭବ ଦେଖୁଥାନ୍ତି । ହଠାତ୍ ଶ୍ରୀପତି କହିଲ, "ବାପା ! ତୁମେ କେଡ଼େ ଭୁଲ କଲ ! ତୁମେ ଯଦି ଗାଁରେ ନ ରହି ସହରକୁ ଆସି ବ୍ୟବସାୟ କରିଥାନ୍ତ ଆମେ ବି ଆଜି ଏମିତି ମହଲ ବନାଇ ମଉଜରେ କାଳ କାଟୁଥାନ୍ତୁ । ଏ କୋଠା ଦେଖିବା ପରେ ଗାଁରେ ଆମ ଜୀବନ ପ୍ରତି ମୋର ଘୃଣା ଆସୁଛି !"

ଶ୍ରୀପତି ଏହା କହି ମହଲର ଅନ୍ୟାନ୍ୟ ଅଂଶ ଦେଖିବାକୁ ଚାଲିଗଲ ।

ଭୂପତି କିନ୍ତୁ ପୁଅ କଥାରେ ମନ ଦୁଃଖ କଲ । ଇତି ମଧ୍ୟରେ ମାଣିକ୍ୟ ବର୍ମା ଆସି ବନ୍ଧୁକୁ ସମ୍ଭାଷଣ କରିସାରି ପଚାରିଲ, "ତୁମେ ବିରସ ଦିଶୁଛ କାହିଁକି ?" ଭୂପତି ନିଜ ପୁଅର ମନୋ-ଭାବ କଥା କହିଲ । ମାଣିକ୍ୟ ବର୍ମା ଟିକିଏ ହସି-ଉଠି କହିଲ, "ତୁମେ ଚିନ୍ତା କରନାହିଁ । ପୁଅ ସହ ମୁଁ ଆଲୋଚନା କରିବି ।" ଏହାପରେ ମାଣିକ୍ୟ ବର୍ମା ଭୂପତିକୁ ଖିଆପିଆ କରାଇ ବିଶ୍ରାମ କକ୍ଷ ଦେଖାଇଦେଲ ।



କିଛି ସମୟ ପରେ ଶ୍ରୀପତି ଫେରିଲା । ମାଣିକ୍ୟ ବର୍ମା ବନ୍ଧୁପୁତ୍ରକୁ ଆଦର କରି ଭୋଜନ କରାଇଲା ଓ ପଚାରିଲା, "ତୁମେ କାହିଁକି ବିମର୍ଷ ଦିଶୁଛ ?"

"ଦିଶିବି ନାହିଁ ? ଆପଣ ଓ ବାପା ଥିଲେ ଦୁଇମିତ୍ର । ଆପଣଙ୍କ ବୁଦ୍ଧି ଦେଖନ୍ତୁ । ଆପଣଙ୍କ ପଥ ଅନୁସରଣ କରିଥିଲେ ବାପା ବି ଆଜି ସହରରେ ଏମିତି ମହଲ ବନାଇଥାନ୍ତେ !" ଶ୍ରୀପତି କହିଲା ।

ମାଣିକ୍ୟ ବର୍ମା ହସି କହିଲେ, "ପୁଅ ! ସେ କଥା କହିହେବ ନାହିଁ । ବେପାରରେ ଲାଭ ଅଛି, କ୍ଷତି ଅଛି । ଭାଗ୍ୟରେ କେତେବେଳେ କ'ଣ ଘଟେ କହିହେବ ନାହିଁ । ମୋର ଜଣେ ଭାଇ ମୋଟ୍ ଟଙ୍କା ନେଇ ସମୁଦ୍ରରେ ବାଣିଜ୍ୟ କରିବାକୁ ଗଲେ । ଜାହାଜ ବୁଡ଼ିଗଲା । ସେ ସର୍ବସ୍ୱାନ୍ତ ହେଲେ । ଆଉ ଥରେ ସେ କାଠ ଗୋଦାମ କଲେ । ହଠାତ୍ ନିଆଁ ଲାଗି ସବୁ ଭସ୍ମ ହୋଇଗଲା । ମୋ ଜୀବନରେ ଦୈବାତ୍ ସେପରି ଘଟିନାହିଁ । କିନ୍ତୁ ସେପରି ଘଟିପାରେ ବୋଲି ଉଦ୍‌ବିଗ୍ନ ରହିବାକୁ ପଡ଼େ ଓ ସେଥିପାଇଁ ମନରେ ଶାନ୍ତି ନ ଥାଏ । କିନ୍ତୁ କୃଷିବାସ କଥା ଅଲଗା । ସେଥିରେ ବି ହାନିଲାଭ ଥାଏ, କିନ୍ତୁ ସର୍ବସ୍ୱ ଯାଏନାହିଁ । ତେଣୁ ଏଡ଼େ ତୀବ୍ର ଉତ୍କଣ୍ଠା ନ ଥାଏ ।"

ଏହା କହିସାରି ମାଣିକ୍ୟ ବର୍ମା ଶ୍ରୀପତିକୁ ଘୋଡ଼ାଗାଡ଼ିରେ ବସାଇ ସହର ତଳି ଅଞ୍ଚଳକୁ ନେଇଯାଇ ଗୋଟାଏ ଉଦ୍ୟାନ ଓ କ୍ଷେତ ଦେଖାଇ କହିଲେ, "କହି ପାରିବ ଏସବୁ କାହାର ?" ଶ୍ରୀପତି ନାହିଁ କରିବାରୁ ସେ ବୁଝାଇଦେଲେ, "ତୁମେ ଯେପରି ତୁମ ବାପାର କୃଷିବାସ ଉପରେ ବିରକ୍ତ ହୋଇ ବ୍ୟବସାୟ କରିବାକୁ ବାହାରିଛ, ମୋ ପୁଅ ସେହିପରି ମୋ ବ୍ୟବସାୟ ଉପରେ ବିରକ୍ତ ହୋଇ ଏଠାରେ ଆସି କୃଷିବାସ କରି ରହୁଛି !"

ଏଥର ଶ୍ରୀପତି ତା' ଅବିବେକିତା ଉପଲବ୍ଧି କଲା । ଭୂପତି ବିଶ୍ରାମ କରିସାରିବା ବେଳକୁ ଶ୍ରୀପତି ତାକୁ କ୍ଷମା ମାଗିଲା । ଉତ୍ସାହରେ ସେ କୃଷିବାସରେ ମନ ଦେଲା ।





# ଏକକୁ ବଳି ଆରେକ

ପ୍ରାଚୀନ କାଳରେ ଅବନ୍ତୀ ରାଜ୍ୟର ଶାସକ ଥିଲେ ଧୀରଦତ୍ତ । ସେ ଜଣେ ଆଦର୍ଶ ଶାସକ ଥିଲେ । ସେଠାରେ ଚୋର ଭୟ ଆଦୌ ନ ଥିଲା । ଧୀରଦତ୍ତଙ୍କର ବୃଦ୍ଧାବସ୍ଥା ପ୍ରାପ୍ତ ହୁଅନ୍ତେ ସେ ନିଜର ପୁତ୍ର ରାଜଶେଖରଙ୍କର ଅଭିଷେକ କରାଇବାକୁ ଇଚ୍ଛା କଲେ ।

ଅଭିଷେକର ପୂର୍ବଦିନ ରାଜଶେଖର ଚିନ୍ତା କଲେ ଯେ ତାଙ୍କ ରାଜ୍ୟରେ ଚୋରି ଭୟ ଯେ ଆଦୌ ନାହିଁ ତା'ର କାରଣ କ'ଣ ? ଚୋରି ବନ୍ଦ କରିବା ପାଇଁ ପିତା କି ବ୍ୟବସ୍ଥା କରିଛନ୍ତି ତାହା ଜାଣିବା ପାଇଁ ସେ ନିଜେ ଚୋରି କରି ପରୀକ୍ଷା କରିବାକୁ ଚାହିଁଲେ । ସେ ନିଜର ପୋଷାକ ବଦଳାଇ ଜଣେ ଧନୀ ଘରକୁ ଚୋରି କରିବା ଉଦ୍ଦେଶ୍ୟରେ ପଶିଲେ । କିଛି ଧନସମ୍ପତ୍ତି ଚୋରି କରି ସେ ଫେରି ଆସିଲେ । ସେ ଭାବିଲେ ବୋଧେ ଚୋରକୁ ବାଧା ଦେବାର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଛି । ଏ ବିଷୟରେ ମଧ୍ୟ ପିତାଙ୍କୁ ସଚେତ କରାଇ ଦେବେ ବୋଲି ସେ ଚାହିଁଲେ । ଏଇକଥା ଭାବି ସେ ଚାଲିଯାଉଥିବା ବେଳେ ଅନ୍ଧାରରେ କାହାର ଏକ ଶକ୍ତ ପାପୁଲି ତାଙ୍କର ସ୍କନ୍ଧ ସ୍ପର୍ଶ କଲା । ସେ ବୁଲିପଡ଼ି ଚାହିଁଲେ । ଦେଖିଲେ ଆଉ ଜଣେ ଲୋକ ଚୋର ପରି ଧୀର ଗଳାରେ କହିଲା, "ଚାଟିକରନା; ପହରାବାଲା ଅଛି । ମୁଁ ବି ତୋ ପରି ଗୋଟିଏ ଚୋର ।"

ଏକଥା ଶୁଣି ରାଜଶେଖର ଭାବିଲେ, ଯାହା ହେଉ ସେ ଅନ୍ତତଃ ଜଣେ ଚୋର ଧରି ପାରିବେ ଓ ପିତାଙ୍କର ସୁଶାସନ ପ୍ରମାଣିତ କରିବା ପାଇଁ ଏହା ଏକ ସୁଯୋଗ ।

ଚୋର କହିଲା—"ମୋ ନାମ ବୀରମଲ୍ଲ ।



ତୁ ମୋ ଆଡ୍‌ଡା ଯାଗାକୁ ଆସ୍ । ଆଉ ତୋ ଚୋରିରୁ କିଛି ଭାଗ ଦେଇ ନିଜ ରାସ୍ତାରେ ଯା ।"

"ଚାଲ ତୁମ ଆଡ୍‌ଡା ଯାଗାକୁ ।" ରାଜଶେଖର କହିଲେ; ଦୁହେଁ ଯାଇ ନଗର ସୀମାରେ ଦୁଇଟି ବଡ଼ ଗୁମ୍ଫା ନିକଟରେ ପହଞ୍ଚିଥିଲେ । ବୀରମଲ୍ଲ, ରାଜଶେଖରଙ୍କୁ ଗୋଟିଏ ବଡ଼ ଗୁମ୍ଫା ଭିତରକୁ ନେଇ ଗଲା । ମଶାଲ ଆଲୁଅରେ ରାଜଶେଖର ଦେଖିଲେ ଗୁମ୍ଫାର କାନ୍ଥମାନଙ୍କରେ ଅନେକ ଅସ୍ତ୍ରଶସ୍ତ୍ର ଟଙ୍ଗା ହୋଇଛି ।

ରାଜଶେଖର ପଚାରିଲେ, "କ'ଣ ତୁମର କେହି ଅନୁଚର ନାହାନ୍ତି ?" ତା'ପରେ ବୀରମଲ୍ଲ ହାତତାଳି ଦେବାରୁ ଗୁମ୍ଫାରେ କୋଡ଼ିଏ ଜଣ ସିପାହୀ ପ୍ରବେଶ କରି ରାଜଶେଖରଙ୍କୁ ବନ୍ଦୀ କଲେ । ରାଜଶେଖର ଏକଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ବୀରମଲ୍ଲ ହସି ହସି କହିଲେ, "ଚୋର ଯୁବକ, ମୋ ରାଜ୍ୟରେ ଚୋରି କରିବା କ'ଣ ଏତେ ସହଜ ? ମୋ ଶାସନରେ ଏହାହିଁ ପ୍ରଥମ ଚୋରି । ମୁଁ ଦୁଇଦିନ ମଧ୍ୟରେ ସମସ୍ତଙ୍କ ଆଗରେ ତୁମ ଚୋରିର ବିଚାର କରି ଦଣ୍ଡ ଦେବି ।"

ରାଜଶେଖର ନିଜ ପିତାଙ୍କର କଣ୍ଠସ୍ୱର ଶୁଣି ଖୁବ୍ ଖୁସି ହୋଇଗଲେ । ତଥାପି ସେ ନିଜ ସ୍ୱରୂପ ପ୍ରକାଶ କଲେ ନାହିଁ । ସେ ଭାବିଲେ ଦେଖା ଯାଉ ପିତା କପରି ବିଚାର କରୁଛନ୍ତି ଓ କି ଦଣ୍ଡ ଦେଉଛନ୍ତି । ସିପାହୀମାନେ ତାଙ୍କୁ ବନ୍ଦୀ କରି କାରାଗାରକୁ ନେଇଗଲେ । କାରାଗାରର ଅଧିପତି ରାଜଶେଖରଙ୍କର ବନ୍ଧୁ ଥିଲେ । ତାଙ୍କୁ ସେ ନିଜର ପ୍ରକୃତ ଉଦ୍ଦେଶ୍ୟ କହି ପୋଷାକ ବଦଳାଇ କାରାଗାରରୁ ନିଜ ଘରକୁ ଚାଲି ଗଲେ ।

ରାତି ପାହିଲା । ରାଜଶେଖରଙ୍କର ରାଜ୍ୟାଭିଷେକ ହେଲା । ତା'ପରେ ରାଜା ଧୀରଦତ୍ତ ରାଜଶେଖରଙ୍କୁ ବୁଝାଇଲେ, "ଆଜି ପର୍ଯ୍ୟନ୍ତ ମୋ ରାଜ୍ୟରେ ଚୋରି ହୋଇ ନ ଥିଲା । କିନ୍ତୁ କାଲି ଏକ ଚୋରି ହୋଇଛି; ଏ ଘଟଣା ମୋ ମନରେ ଗଭୀର ରେଖାପାତ କରିଛି । ତେଣୁ

ତୁମେ ଭବିଷ୍ୟତରେ ଚୋରର ବିଷୟରେ ବହୁତ ସତର୍କ ରହିବ ।"

ସେ ପିତାଙ୍କ କଥା ଶିରୋଧାର୍ଯ୍ୟ କଲେ ଓ ରାତିରେ ଘୋଡ଼ାରେ ନିଜେ ଯାଇ ଦେଖିଲେ ନଗରରକ୍ଷକ ସାବଧାନ ଅଛି ନା ନାହିଁ ।

କିଛି ଦୂର ଯିବା ପରେ ଦଳେ ଚୋର ହଠାତ୍ ରାଜଶେଖରଙ୍କୁ ଘେରି ଗଲେ । ରାଜଶେଖର ମଧ୍ୟ ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ତରବାରି ଧରି ନିଜକୁ ରକ୍ଷା କରିବା ପାଇଁ ଯୁଦ୍ଧ କଲେ । ସେ ଏକଥା ଭାବି ଆଶ୍ଚର୍ଯ୍ୟ ହେଲେ ଯେ ଯେଉଁ ରାଜ୍ୟରେ ଆଜିପର୍ଯ୍ୟନ୍ତ ଚୋର ନ ଥିଲା, ସେଇଠି ତାଙ୍କର ଅଭିଷେକ ଦିନ କେଉଁଠୁ ବା ଏଡ଼େ ବଡ଼ ଦଳ ଡାକୁ ଆସି ପହଞ୍ଚି ଗଲେ ।

ଠିକ୍ ଏଇ ସମୟରେ ଜଣେ ବ୍ୟକ୍ତି ଘୋଡ଼ାରେ ଆସି ସେଠାରେ ପହଞ୍ଚିବାରୁ ଚୋରମାନେ ପଳାଇଲେ । ରାଜଶେଖର ଚୋରମାନଙ୍କୁ ଧରିବାକୁ ତାଙ୍କର ଅନୁସରଣ କରିବାକୁ ଚାହିଁଲେ । କିନ୍ତୁ ତାଙ୍କୁ ରକ୍ଷା କରିବା ବ୍ୟକ୍ତି ଜଣକ କହିଲା, "ରାଜନ୍, ଏ ଚୋରମାନଙ୍କୁ ବର୍ତ୍ତମାନ ଧରିବା କଷ୍ଟକର । ମୋର ଆକ୍ରମଣ ଦେଖି ସେମାନେ ଡରି ପଳାଇଛନ୍ତି । ଆଉ କେବେ ଆସିବେ ନାହିଁ ।"

ରାଜଶେଖର ସେହି ଆଗନ୍ତୁକଙ୍କୁ ପଚାରିଲେ



"ଆପଣ କିଏ ? ଆପଣ କଣ ଏଠିକାର ଲୋକ ? ଯାହା ହେଉ ମୋତେ ରକ୍ଷା କଲେ ।"

"ରାଜନ୍, ମୁଁ ପଡ଼ୋଶୀ ରାଜ୍ୟର ଲୋକ । ନିଜ ଦେଶରେ ଜୀବିକାର୍ଜ୍ଜନର କୌଣସି ଉପାୟ ନ ଦେଖି ମୁଁ ମୋ ପୁଅ ସହିତ ଏ ଦେଶକୁ କିଛିଦିନ ଆଗରୁ ଆସିଥିଲି, କାଲିଠୁ ମୋ ପୁଅକୁ ପାଉ ନାହିଁ । ମୁଁ ତାକୁ ଖୋଜିବାକୁ ବାହାରିଥିଲି ଦେଖିଲି ଚୋର ଦଳ ଆପଣଙ୍କୁ ହଇରାଣ କରୁଛନ୍ତି । କାଲି ମୁଁ ଆପଣଙ୍କର ଅଭିଷେକ ଦେଖିଥିବାରୁ ସଙ୍ଗେ ସଙ୍ଗେ ଚିହ୍ନି ଦେଲି ଓ ଭାବିଲି ଏ ପରିସ୍ଥିତିରେ ଆପଣଙ୍କୁ ସାହାଯ୍ୟ କରିବା ମୋର କର୍ତ୍ତବ୍ୟ ।" ଆଗନ୍ତୁକଟି



ରହସ୍ୟମୟ ହସି ହସି କହିଲା ।

ରାଜଶେଖର ଭାବିଲେ ଅନ୍ୟ ଦେଶର ଲୋକ ତାଙ୍କୁ ଏତେ ସାହାଯ୍ୟ କରିଛି ତାକୁ ସତ୍କାର କରିବା ତାଙ୍କର ପରମ କର୍ତ୍ତବ୍ୟ । ଏକଥା ଭାବି ସେ ତାଙ୍କୁ ତାଙ୍କ ମୁଦିଟି ଦେଇ କହିଲେ, "କାଲି ରାଜଦରବାରକୁ ଆସି ଏହି ମୁଦିଟି ଦେଖାଇବ । ତୁମେ ଯାହା ମାଗିବ ତାହା ଦେବି ।"

ପରଦିନ ଦରବାର ପୂର୍ଣ୍ଣରୂପେ ବସିଛି । ଆଗନ୍ତୁକଟି ମୁଦିଟି ଧରି ଦରବାରରେ ପ୍ରବେଶ କଲା । ରାଜଶେଖର ତା' ପାଖକୁ ଆସି ପଚାରି-ଲେ "ବର୍ତ୍ତମାନ ତୁମର ଇଚ୍ଛା କ'ଣ କୁହ, ମୁଁ ପୂରଣ କରିବାକୁ ଚେଷ୍ଟା କରିବି ।"

"ମହାରାଜ ମୁଁ ଶୁଣିଲି ଯେ ପଅରଦିନ ରାତିରେ ଚୋରି କରିବା ଅବସ୍ଥାରେ ମୋ ପୁଅକୁ ଆପଣଙ୍କ ପିତା ବନ୍ଦୀ କରିଛନ୍ତି ଏବଂ ଏପର୍ଯ୍ୟନ୍ତ ସେ କାରାଗାରରେ ଅଛି । କୃପା କରି ତାହାର ଅପରାଧ କ୍ଷମା କରି ତାକୁ ମୁକ୍ତ ଦିଅନ୍ତୁ । ସେ ମୋର ଗୋଟିଏ ବୋଲି ପୁଅ । ମୁଁ ତାକୁ ନେଇ ନିଜ ଦେଶକୁ ପୁଣି ଫେରିଯିବି ।" ଆଗନ୍ତୁକ କହିଲା ।

ରାଜଶେଖର ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇ ବସି ରହିଲେ । ସେ ଭାବିଲେ ପଅରଦିନ ରାତିରେ ତ ସେ ନିଜେହିଁ ଚୋରି କରିଥିଲେ । ଆଉ ତ କୌଣସି ଚୋରି ହୋଇ ନାହିଁ । ତେଣୁ ଏହି ଆଗନ୍ତୁକ କହିବା କଥାର ଅର୍ଥ କ'ଣ ? ଯଦି ଦରବାରରେ ତାଙ୍କ ପିତା ରାଜା ଥା'ନ୍ତେ ତେବେ ମୁହୂର୍ତ୍ତକରେ ସେ ଏ ସମସ୍ୟାର ସମା-ଧାନ କରିପାରି ଥା'ନ୍ତେ ।

ଏକଥା ଭାବି ରାଜଶେଖର ସିଂହାସନରୁ ଉଠି ଠିଆ ହେଲେ ଓ ରାଜବାଟୀକୁ ଚାଲିଗଲେ । ଦରବାରର ଲୋକମାନଙ୍କୁ ଏସବୁ ଖୁବ୍ ବିଚିତ୍ର ମନେ ହେଲା ।

ଇତି ମଧ୍ୟରେ ଆଗନ୍ତୁକ ନିଜର ପୋଷାକ ବଦଳାଇ ମହାରାଜଙ୍କ ରୂପରେ ସମସ୍ତଙ୍କ ଆଗ-ରେ ଠିଆ ହେଲେ । ଦରବାରର ଲୋକ ହର୍ଷ-ନାଦ କଲେ । ମହାରାଜ ନିଜର ଆସନ ଉପରେ ବସିଲେ । ସେ ଦରବାରର ଲୋକ-ମାନଙ୍କୁ କହିଲେ ଯେ ସେ ନିଜ ପୁଅକୁ ପରୀକ୍ଷା କରିବା ପାଇଁ ଏସବୁ କରିଥିଲେ ।

ଏଣେ କ'ଣ ହୋଇଛି ନା ରାଜଶେଖର

ଚୋରର ବେଶ ଧରି ସଭାକୁ ଆସିଲେ ଓ ଉଚ୍ଚ ସ୍ୱରରେ କହିଲେ, "ବାବା, ଆପଣ କେଉଁଠି ? ଚାଲନ୍ତୁ ଆମେ ନିଜ ଦେଶକୁ ଲେଉଟି ଯିବା । ରାଜା ଆପଣଙ୍କ ଇଚ୍ଛା ପୂରଣ କରିବାକୁ ଯାଇ ମୋତେ କାରାଗାରରୁ ମୁକ୍ତ କରିଛନ୍ତି ।"

"ବନ୍ଦୀକୁ ଦେଖିବା ମାତ୍ରେ ରାଜା ଧୀରଦତ୍ତ ସିଂହାସନରୁ ଉଠି ଠିଆ ହେଲେ ଓ କହିଲେ, "ପୁତ୍ର, ତୁମକୁ ମୁକ୍ତ ଦେବାବାଲା ରାଜା କାହାନ୍ତି ?" ରାଜଶେଖର ଚିହ୍ନି ନେଲେ ଯେ ଆଗନ୍ତୁକ ତାଙ୍କ ପିତାଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ସେ ନିଜର ବନ୍ଦୀ ବେଶ ଫୋପାଡ଼ି ଦେଇ କହିଲେ, "ଚୋର ଯୁବକକୁ ମୁକ୍ତ କରି ବାଲା ରାଜା ହେଉଛି ମୁଁ ।"

ଦରବାରର ଲୋକମାନେ ଏସବୁ ଦେଖି ଆନନ୍ଦରେ ଖୁବ୍ କୋଳାହଳ କଲେ । ଧୀରଦତ୍ତ ଖୁସିରେ ନିଜପୁତ୍ରକୁ ଆଲିଙ୍ଗନ କଲେ ।

ତା'ପରେ ରାଜଶେଖର କହିଲେ, "ଆପଣଙ୍କ ଶାସନ କ୍ଷମତା ଜାଣିବା ପାଇଁ ସେଦିନ ମୁଁ ଚୋରର ଅଭିନୟ କଲି । ମୁଁ ଜାଣିଥିଲି ଯେ ଆପଣହିଁ ମୋତେ ବନ୍ଦୀ କଲେ । କିନ୍ତୁ କପରି ବିଚାର କରିବେ ଓ ଦଣ୍ଡ ଦେବେ ସେ ପାଇଁ ମୁଁ ନିଜକୁ ପ୍ରକାଶ କଲି ନାହିଁ । ଏବେ ମୁଁ ଜାଣିଲି ଯେ କପରି ଦକ୍ଷତାର ସହିତ ଆପଣ ଶାସନ କାର୍ଯ୍ୟ ସମ୍ଭାଳୁଥିଲେ । କିନ୍ତୁ ମୁଁ ବୁଝିପାରିଲି ନାହିଁ ଯେ ମଝିରେ କପରି ଆଗନ୍ତୁକଟି ଅସି ପହଞ୍ଚିଲେ ।

"ରାଜଶେଖର ମୁଁ ତୁମର ତୀକ୍ଷ୍ଣ ବୁଦ୍ଧି ଦେଖି ଖୁସି । ମୁଁ ମଧ୍ୟ ତୁମର ଶକ୍ତି ସାମର୍ଥ୍ୟ ପରୀକ୍ଷା କରିବା ପାଇଁ ଚୋର ଦଳ ଦ୍ୱାରା ଆକ୍ରମଣ କରାଇବାର ନାଟକ ରଚନା କରିଥିଲି । ଚୋର ଯୁବକ ପାଇଁ ତୁମର ବିଚାର ଜାଣିବା ପାଇଁ ମୁଁହିଁ ଆଗନ୍ତୁକ ରୂପେ ଆସିଥିଲି । କିନ୍ତୁ ତୁମେ ଯେପରି ମୋତେ ଆଗନ୍ତୁକ ରୂପରେ ଚିହ୍ନିନେଲ, ମୁଁ ସେପରି ତୁମକୁ ଚୋର ଯୁବକ ଭାବରେ ଚିହ୍ନି ପାରି ନ ଥିଲି ।" ଧୀରଦତ୍ତ କହିଲେ ।

"ପିତା ଓ ପୁତ୍ର ଦୁହେଁ ଏକକୁ ବଳି ଆରେକ ।" ଦରବାରର ଉପସ୍ଥିତ ସବୁ ଲୋକ ମୁକ୍ତ କଣ୍ଠରେ ଦୁହିଁଙ୍କର ପ୍ରଶଂସା କଲେ ।



# ଭଗବାନଙ୍କ ଇଚ୍ଛା

ଗୋଟିଏ ଗାଁରେ ସୋମୁ ଓ ଗୋପୁ ନାମକ ଦୁଇ ବନ୍ଧୁ ଥିଲେ । ଗୋପୁ ପରିଶ୍ରମ କରି ରୋଜଗାର କରେ, କିନ୍ତୁ ସୋମୁ ବିଶେଷ କାମଦାମ କରେ ନାହିଁ । ଥରେ ଗୋପୁ ସୋମୁକୁ ଗାଳି ଦେଲା । ସୋମୁ କିନ୍ତୁ ଉତ୍ତରରେ କହିଲା, "ଚିନ୍ତା କାହିଁକି କରିବି, ଭଗବାନଙ୍କ ଇଚ୍ଛାରେ ସବୁ ମିଳିଯିବ ।" କିନ୍ତୁ ଗୋପୁ କହିଲା ବିନା ପରିଶ୍ରମରେ ଭଗବାନ୍ ମଧ୍ୟ କିଛି ଦେବେ ନାହିଁ ।

ଭଗବାନ୍‌ଙ୍କ ଇଚ୍ଛାରେ କିପରି ସବୁ ହେଉଛି ସେ କଥା ପ୍ରମାଣ କରିବାକୁ ଦିନେ ସୋମୁ କିଛି ନଖାଇ ଗୋଟିଏ ସ୍ଥାନରେ ବସିଲା । ଗୋପୁ ମଧ୍ୟ ଯାଇ ତା' ପାଖରେ ବସିଲା । ଟିକେ ସମୟ ପରେ ସତରେ ଗୋଟିଏ ଖାଦ୍ୟପୂର୍ଣ୍ଣ ଥାଳୀ ଆସି ସୋମୁ ପାଖରେ ପହଞ୍ଚିଲା । ସୋମୁ ତାକୁ ଧରିବାକୁ ଯିବାରୁ ତାହା ଟିକିଏ ଦୂରକୁ ଘୁଞ୍ଚିଗଲା । ତା'ପରେ ଥାଳୀ ପଛରେ ଖରାରେ କିଛି ସମୟ ଜୋର୍‌ରେ ଦୌଡ଼ା-ଦୌଡ଼ି କରି ସେ ଥାଳୀଟିକୁ ପାଇଲା ।

ସେତେବେଳେ ଗୋପୁ ବୁଝାଇଲା, "ଭଗବାନ୍ ଖାଇବା ଦିଅନ୍ତି ସତ, କିନ୍ତୁ ତାକୁ ମଧ୍ୟ ପାଇବାକୁ କିଛି ନା କିଛି ପରିଶ୍ରମ କରିବାକୁ ପଡ଼େ, ଯେପରି ବର୍ତ୍ତମାନ୍ ତୁ କଲୁ ।"





# ବଧୂ ନିର୍ବାଚନ

ମାୟାପୁର ନାମରେ ଗୋଟିଏ ରାଜ୍ୟ ଥିଲା ।

ଏହାର ତିନି ପାଖରେ ତିନୋଟି ପଡ଼ୋଶୀ ରାଜ୍ୟ ଥିଲେ । ସେମାନଙ୍କ ନାମ ହେଉଛି ରତ୍ନଗଡ଼, କୁବେରପୁର ଓ ସିଂହଭୂମି । ସେ ତିନି ରାଜ୍ୟର ରାଜାମାନଙ୍କର ପୁତ୍ର ସନ୍ତାନ ନ ଥିଲେ, ଥିଲେ ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ କନ୍ୟା-ସନ୍ତାନ । ସେମାନଙ୍କ ନାମ ହେଉଛି କୁମୁଦିନୀ, ଲତିକା, ସ୍ୱପ୍ନା । ତିନିଜଣ ରାଜକନ୍ୟା ବିବାହ ଯୋଗ୍ୟା ହୋଇ ଯାଇଥାନ୍ତି ।

ମାୟାପୁରର ଶାସକ ଦେବାଶୀଷଙ୍କର କଲ୍ୟାଣ ନାମରେ ଗୋଟିଏ ମାତ୍ର ପୁତ୍ର ଥିଲା । ସେ ଥିଲା ଖୁବ୍ ବଳବାନ୍ ଓ ପରାକ୍ରମୀ । ତେଣୁ ପଡ଼ୋଶୀ ତିନୋଟି ରାଜ୍ୟର ରାଜା ନିଜ ନିଜ କନ୍ୟା ସହିତ କଲ୍ୟାଣର ବିବାହ ଦେବାକୁ ଇଚ୍ଛା ପ୍ରକାଶ କରି ଦୂତ ପଠାଇଲେ ।

ଏହି ଖବର ପାଇ ଦେବାଶୀଷ ମହା ସଙ୍କଟରେ ପଡ଼ିଲେ । ସେ ଜଣକ ଝିଅକୁ ବୋହୂ କରି ଅନ୍ୟ ଦୁଇଜଣଙ୍କ ଶତ୍ରୁ ହେବାକୁ ଚାହୁଁ ନ ଥିଲେ । କାରଣ ସେମାନେ ତିନିଜଣହିଁ ମାୟାପୁରଠାରୁ ଅଧିକ ଶକ୍ତିଶାଳୀ ରାଜ୍ୟର ରାଜା । ତେଣୁ ରାଗିଗଲେ ସେମାନେ ତତ୍କ୍ଷଣାତ୍ ଯୁଦ୍ଧ କରି ମାୟାପୁରକୁ ଧ୍ୱଂସ କରିପକାଇବେ । ତା' ଛଡ଼ା ମାୟାପୁରର ବାଣିଜ୍ୟ-ପଥ ରତ୍ନଗଡ଼ ମଧ୍ୟ ଦେଇ ଯାଇଛି । ତେଣୁ ରତ୍ନଗଡ଼ ସହିତ ଶତ୍ରୁତା କରିବା ମାନେ ଆତ୍ମହତ୍ୟା ସହିତ ସମାନ । ପୁଣି ତିନି ରାଜକୁମାରୀଯାକ ସୁନ୍ଦରୀ ଥିଲେ ଯଦିଓ ରତ୍ନଗଡ଼ର ରାଜକୁମାରୀ କୁମୁଦିନୀ ସବୁଠାରୁ ସୁନ୍ଦରୀ ଥିଲେ । ରାଜକୁମାର କଲ୍ୟାଣ ମଧ୍ୟ କୁମୁଦିନୀ ପ୍ରତି ବିଶେଷ ଭାବରେ ଆକୃଷ୍ଟ ଥିଲେ । କାରଣ ସେମାନଙ୍କର

ଏ. ସି. ସରକାର, ଯାଦୁକର,

ଥରେ ପରସ୍ପର ଦେଖା ହୋଇଥିଲା ଓ କୁମୁଦିନୀ ମଧ୍ୟ କଲ୍ୟାଣଙ୍କୁ ପସନ୍ଦ କରିଥିଲେ ।

ଭିନରାଜ୍ୟର ଦୂତ ଚାଲିଯିବା ପରେ ରାଜା ପୁଅକୁ କହିଲେ, "ପୁଅ, ବର୍ତ୍ତମାନ ମହାସଙ୍କଟ ଉପସ୍ଥିତ । କ'ଣ କରାଯିବ ? ଏକମାତ୍ର ସମାଧାନ ହେଲା ତିନୋଟି ରାଜକୁମାରୀଙ୍କୁ ବିବାହ କରିବାକୁ ହେବ ।" କଲ୍ୟାଣ କହିଲେ, "ବାବା, ଏପରି ପ୍ରସ୍ତାବରେ କନ୍ୟାପିତାମାନେ କଦାପି ରାଜି ହେବେ ନାହିଁ ।"

"ତା'ହେଲେ କ'ଣ କରାଯିବ ?" ରାଜା ପଚାରିଲେ । "ଆପଣ ଆମର ଯୁକ୍ତିଯୁକ୍ତ ପ୍ରସ୍ତାବ ଦେବା ପାଇଁ ସମୟ ମାଗନ୍ତୁ ।" ତା'ପରେ ଦେଖାଯିବ ।" କଲ୍ୟାଣ କହିଲେ ।

ଦରବାରର ଯାଦୁକର ରାଜକୁମାରଙ୍କର ବିଷାଦପୂର୍ଣ୍ଣ ମୁଖ ଦେଖି ପଚାରିଲା, "ଆପଣଙ୍କ ମୁହଁ ଏତେ ଶୁଖିଲା ଦିଶୁଛି କାହିଁକି ?"

କଲ୍ୟାଣ ସବୁକଥା ତାକୁ କହିଲେ ଓ ଶେଷରେ କହିଲେ, ତାଙ୍କର ଇଚ୍ଛା କୁମୁଦିନୀଙ୍କୁ ବିବାହ କରିବେ ।

"ଓଃ, ଏଇ କଥା ? ଆପଣ ଚାହାନ୍ତି ରତ୍ନଗଡ଼ ରାଜ୍ୟ ସହିତ ମିତ୍ରତା ତଥା କୁମୁଦିନୀ ସହ ବିବାହ ଏବଂ ତତ୍‌ସହ ଅନ୍ୟ ରାଜ୍ୟମାନଙ୍କ ସହିତ ଯେପରି ଶତ୍ରୁତା ନ ହୁଏ ! ଏଇ ତ ?" ଯାଦୁକର ହସି ହସି ପଚାରିଲା । "କ'ଣ ଆପଣଙ୍କ ଯାଦୁ ଏଠାରେ କିଛି କାମ ଦେଇପାରିବ ?" କଲ୍ୟାଣ ପଚାରିଲେ ।



"ରାଜକୁମାର, ସୂକ୍ଷ୍ମବୁଦ୍ଧି ଓ କୌଶଳ ଥିଲେ ଯାଦୁଦ୍ୱାରା ନ ହୋଇ ପାରିବ କ'ଣ ? ଆଚ୍ଛା କୁହନ୍ତୁ, କୁମୁଦିନୀଙ୍କ ସହିତ ଆପଣଙ୍କର ପରିଚୟ ଅଛି ତ ?" ଯାଦୁକର ସୋମନାଥ ପଚାରିଲା ।

"ସେପରି କିଛି ଘନିଷ୍ଠ ପରିଚୟ ନାହିଁ । କିନ୍ତୁ ଦରକାର ପଡ଼ିଲେ କଥାବାର୍ତ୍ତା କରି ପାରିବି ।" କଲ୍ୟାଣ କହିଲେ ।

"ଖାଲି କଥା ନୁହେଁ । ଦରକାର ପଡ଼ିଲେ ସେ ଆପଣଙ୍କ କଥା ମାନି କାମ କରିବେ ତ ?" ସୋମନାଥ ପଚାରିଲା ? "ମୁଁ ଭାବୁଛି ମୋ ସହିତ ବିବାହ କରିବା ପାଇଁ ସେ ଯାହା ପ୍ରୟୋଜନ ତାହା କରିବାକୁ ରାଜି ହେବେ ।" କଲ୍ୟାଣ କହିଲେ । "ତାହା ହେଲେ ତ ମୁଁ ଆପଣଙ୍କ ସମସ୍ୟା ସମାଧାନ କରି ଦେବି !" ସୋମନାଥ କହିଲା ।

ପରଦିନ କଲ୍ୟାଣ ପିତାଙ୍କୁ ଯାଇ କହିଲେ, "ବାବା, ଆମମାନଙ୍କ ପରି ସେହି ତିନି ରାଜ୍ୟର ରାଜାଙ୍କର ତ ଭାଗ୍ୟ ଉପରେ ବିଶ୍ୱାସ ଥିବ । ବଧୂ ନିର୍ବାଚନରେ କିଛି ପୂଜାପୂଜର କାର୍ଯ୍ୟକ୍ରମ ଅଛି । ସେଥି ପାଇଁ ଅନ୍ୟ ଏକ ବିଶେଷ ବିଧି ହେଉଛି "କୁଙ୍କୁମ ପରୀକ୍ଷା" । ଆପଣ ସେହି ତିନି ରାଜ୍ୟର ରାଜାଙ୍କୁ ଏହି ପରୀକ୍ଷା ଓ ତାହାର ଫଳାଫଳ ମାନି ନେବାକୁ ପ୍ରସ୍ତାବ ଦିଅନ୍ତୁ ।"

ତା'ପରେ କଲ୍ୟାଣ ରାଜାଙ୍କୁ ସମଗ୍ର ଯୋଜନା ଶୁଣାଇଲା । ରାଜା ଖୁବ୍ ଖୁସି ହୋଇ ପାଟହାତୀ



ଉପରେ ବସି ଭିନ୍ନରାଜ୍ୟର ରାଜାଙ୍କ ସହିତ ଦେଖା କଲେ ।

ପୂର୍ବନିର୍ଦ୍ଧାରିତ ଯୋଜନା ଅନୁସାରେ ଭିନ୍ନ ରାଜ୍ୟର ରାଜା ନିଜର କନ୍ୟା ଓ ବନ୍ଧୁବାନ୍ଧବଙ୍କ ସହିତ ମାୟାପୁରର ଏକ ମନ୍ଦିରକୁ ଆସିଲେ । ମନ୍ଦିର ଖୁବ୍ ସଜାସଜି କରା ହୋଇଥିଲା ! କଲ୍ୟାଣ ବରପୋଷାକ ପିନ୍ଧି ଥିଲେ ଓ ରାଜ କନ୍ୟାମାନେ ସୁନ୍ଦର ବେଶରେ ସଜ୍ଜିତା ଥିଲେ ।

ମନ୍ଦିରର ପୂଜାରୀ ଭଗବାନଙ୍କର ପୂଜା କରି ଗୋଟିଏ ପିତ୍ତଳ ଥାଳୀରେ ତେଲ ମିଶ୍ରିତ କୁଙ୍କୁମ ଆଣି ବାହାରକୁ ଆସିଲେ । ତିନିଜଣ ରାଜକୁମାରୀଙ୍କ ହାତ ସଫା କନାରେ ପୋଛି ହୋଇଗଲା ଓ ସେମାନଙ୍କୁ ହାତମୁଠା ବନ୍ଦ କରିବାକୁ କୁହାଗଲା । ପରେ କଲ୍ୟାଣଙ୍କ ହାତରେ କୁଙ୍କୁମ ଦେଇ ପୂଜାରୀ କହିଲେ, "କଲ୍ୟାଣଙ୍କର ପତ୍ନୀ ହେବା ଯାହାର ଭାଗ୍ୟରେ ଲେଖା ଅଛି ତା' ହାତରେ କୁଙ୍କୁମର ଛାପା ଆସିଯିବ ।"

ଏକଥା କହି ସେ କଲ୍ୟାଣଙ୍କ ହାତର ବିନ୍ଦୁ ପୋଛି ଦେଲେ ଓ କହିଲେ "ରାଜକୁମାରୀମାନେ ନିଜ ନିଜ ହାତ ଫିଟାଇ ଦେଖନ୍ତୁ କାହା ହାତରେ କୁଙ୍କୁମ ବିନ୍ଦୁ ଆସିଛି ।"

ହାତ ଫିଟାଇବାରୁ ଦେଖା ଗଲା କେବଳ କୁମୁଦିନୀଙ୍କ ହାତରେହିଁ ଚିହ୍ନ ରହିଛି । ତା'ପରେ ଭିନ୍ନରାଜା କୁମୁଦିନୀ ଓ କଲ୍ୟାଣଙ୍କୁ ଆଶୀର୍ବାଦ କଲେ । ବିବାହ ଉତ୍ସବ ମହା ଆଡ଼ମ୍ବର ସହ-କାରେ ଅନୁଷ୍ଠିତ ହେଲା ।

କିନ୍ତୁ କୁଙ୍କୁମ ଚିହ୍ନ କିପରି ଦେଖା ଦେଲା ? ଆଗରୁ କୁମୁଦିନୀଙ୍କ ହାତ ନଖ ଭିତରେ କୁଙ୍କୁମ ଥିଲା । କିନ୍ତୁ ସେ ମେହେନ୍ଦି ଲଗାଇ ଥିବାରୁ ଜଣା ପଡ଼ି ନ ଥିଲା । ହାତ ମୁଠାଇ ଧରିବା ବେଳେ ନଖ ଚାପି ଦେବାରୁ କୁଙ୍କୁମ ବିନ୍ଦୁ ହାତରେ ଅଙ୍କିତ ହେଲା । ଏ କାମ କଲ୍ୟାଣହିଁ ଆଗରୁ କୁମୁଦିନୀଙ୍କୁ ବୁଝାଇ କରାଇ ନେଇ-ଥିଲେ ।



# ବାକ୍ଚାତୁରୀ

ବିଦେହ ରାଜ୍ୟରେ ରାମଶାସ୍ତ୍ରୀ ନାମକ ଜଣେ ଜ୍ୟୋତିଷ ଥିଲେ । ତାଙ୍କର ଇଚ୍ଛା ଥିଲା ଦରବାରର ଜ୍ୟୋତିଷ ପଦ ପାଇବାକୁ । ଦିନେ ସେ ନିଜର ଇଚ୍ଛା ରାଜାଙ୍କୁ ଜଣାଇଲେ । କିନ୍ତୁ ରାଜାଙ୍କର ଜ୍ୟୋତିଷ ବିଦ୍ୟା ଉପରେ ଏତେ ବିଶ୍ୱାସ ନ ଥିଲା । ତେଣୁ ଯିଏ ଦରବାରୀ ଜ୍ୟୋତିଷ ହେବାକୁ ଚାହୁଁଥିଲା ରାଜା ତାଙ୍କୁ ଓଲଟା ପ୍ରଶ୍ନ କରୁଥିଲେ, "କୁହ ତ, ମୁଁ ତୁମକୁ ଦରବାର ଜ୍ୟୋତିଷର କାମ ଦେବାକୁ ଚାହୁଁଛି ନା ନାହିଁ ?" ଯଦି ସେ କୁହେ, "ହଁ" ତେବେ ରାଜା କହନ୍ତି, "ତୁମ ଗଣନା ଭୁଲ୍, ମୁଁ ଚାହେଁ ନାହିଁ, ବର୍ତ୍ତମାନ ନିଜ ବାଟରେ ଯାଇପାର ।" ଯଦି ସେ କହେ "ଆପଣ ଚାହାନ୍ତି ନାହିଁ," ତେବେ ଏ କଥା ଜ୍ୟୋତିଷ ଶାସ୍ତ୍ର ପାଇଁ ଅପମାନ ହୋଇଯିବ । ତେଣୁ ସେ କଥା କେହି କରନ୍ତି ନାହିଁ ।

କିନ୍ତୁ ରାମଶାସ୍ତ୍ରୀଙ୍କ କ୍ଷେତ୍ରରେ ଉତ୍ତର ଥିଲା ଓଲଟା । ସେ କହିଲେ, "ମହାରାଜ, ଆପଣ ମୋତେ କାମ ଦେବାକୁ ଚାହାନ୍ତି ନାହିଁ ।"

ରାଜା ଚଟକରି ଉତ୍ତର ଦେଲେ, "ଆପଣଙ୍କ ଗଣନା ଭୁଲ୍ । ମୁଁ ଆପଣଙ୍କୁ କାମ ଦେବାକୁ ଚାହେଁ । ତେଣୁ ଗଣନା ଭୁଲ୍ ପ୍ରମାଣିତ ହେଲା ।"

"ମହାରାଜ, କାମ ଦେବାକୁ ଚାହୁଁଥିଲେ ଆପଣ ଦେଇ ପାରନ୍ତେଣି । ଜ୍ୟୋତିଷ ବିଦ୍ୟାର ଗଣନା କିଛି ଭୁଲ୍ ନୁହେଁ । ଯଦି ଗଣନା ଭୁଲ୍ ବୋଲି ପ୍ରମାଣିତ କରିବାକୁ ଚାହାନ୍ତି ତେବେ କାମ ଦେଇ ଦିଅନ୍ତୁ । ଆପଣଙ୍କର ଯେପରି ଇଚ୍ଛା ।" ରାମଶାସ୍ତ୍ରୀ ବୁଝାଇଲେ ।





# ପରିବର୍ତ୍ତନ

ଗୋଟିଏ ଗାଁରେ ଧନୁ ନାମରେ ଜଣେ ବ୍ୟବସାୟୀ ଥାଏ । ସେ ସବୁ ଶସ୍ୟ ଗାଁରୁ ନେଇ ସହରରେ ବିକେ । ତା'ର ଆଉ ତିନି ଭାଇ ଥାନ୍ତି । ସେମାନେ ଚାଷ କରି ବହୁତ ଧନ ରୋଜଗାର କରି ଆହୁରି ଜମି କିଣିଲେ । ଧନୁର ସ୍ୱଭାବ ସେ ଅନ୍ୟର ଭଲ ସହିପାରେ ନାହିଁ ।

ଧନୁ ପାଖରେ ଯୋଗୀନ୍ଦ୍ର ନାମରେ ଜଣେ ଗୁମାସ୍ତା ଥାଏ । ସେ ଥରେ ଧନୁକୁ କହିଲା, "ବାବୁ, ଆପଣ ମୋତେ ଯେତେ ଦରମା ଦିଅନ୍ତି ସେଥିରେ ପରିବାର ପୋଷଣ ଅସମ୍ଭବ ହୋଇ ପଡ଼ିଲାଣି । ତେଣୁ ଯଦି କିଛି ଟଙ୍କା ଧାର ଦିଅନ୍ତେ ମୁଁ ମଧ୍ୟ ଶସ୍ୟସବୁର ବ୍ୟବସାୟଟିଏ ଖୋଲନ୍ତି । ମୁଁ ସେସବୁ ମଫସଲରୁ ସଂଗ୍ରହ କରି ଆଣି ଆପଣଙ୍କୁହିଁ ବିକନ୍ତି ଖୁବ୍ କମ ଲାଭ ରଖି । ଆପଣ ସେଗୁଡ଼ିକ ସହରରେ ବିକି ଆହୁରି ଅଧିକ ରୋଜଗାର କରନ୍ତେ ।

ଏ କଥା ଶୁଣି ଧନୁ ହସିଉଠିଲା ଓ କହିଲା, "ଆରେ, ତୁ ବି ମୋ ଭଳି ବଡ଼ ବ୍ୟବସାୟୀ ହେବାକୁ ମନ ବଳାଇଲୁଣି ? ତୁ ବ୍ୟବସାୟୀ ହେଲେ ପୁଣି ମୋର ଗୁମାସ୍ତା ହେବ କିଏ ?" ବିଚରା ଯୋଗୀନ୍ଦ୍ର କିଛି ଉତ୍ତର ନ ଦେଇ ଚୁପ୍ ରହିଲା ।

ଦିନେ ଧନୁ ଓ ଯୋଗୀନ୍ଦ୍ର ଦୁହେଁ ନଦୀ ପାର ହୋଇ ଅନ୍ୟ ଗ୍ରାମମାନଙ୍କୁ ଶସ୍ୟ କିଣିବାକୁ ଗଲେ । ସେଠାରେ ସବୁ ଦଲାଲମାନେ ଧନୁକୁ କହିଲେ, "ଆପଣ ଏଇଠି ରହନ୍ତୁ ଆମେସବୁ ଗାଁ ଗାଁ ବୁଲି ଶସ୍ୟ ସଂଗ୍ରହ କରି ଏଇଠି ଦେଇଯିବୁ । ଆମକୁ ଖାଲି କିଛି ପଇସା ଦେବେ । ଧରନ୍ତୁ ଏକ କୁଇଣ୍ଟାଲରେ ଚାରିଟଙ୍କା ।"

ଧନୁ ହସି ହସି ଥଟ୍ଟା କରି କହିଲା, "ଆରେ, ତୁମେମାନେ ତ ମୋ ପରି ବଡ଼ ବ୍ୟବସାୟୀ ହୋଇଯିବାକୁ ବସିଲଣି । ତୁମମାନଙ୍କ ଦଲାଲି ବା ମଧ୍ୟସ୍ଥି ମୋର ଦରକାର ନାହିଁ । ତୁମେମାନେ ଏଇଠି ରହି ନୌକାରେ ମାଲ ଲଦା ହେବା

R. K. Sah

କାମ ଦେଖ, ସେ ପୁନରାୟ ହସିଲା ।"

ଦଲାଲମାନେ ଏଥିରେ ରାଗିଉଠିଲେ । କିନ୍ତୁ ଆଉ କିଛି ନ କହି ଚୁପ୍ ରହିଲେ କାରଣ ଦିନୁ ସହିତ ଝଗଡ଼ା କଲେ ମଜୁରି ମଧ୍ୟ ମିଳିବ ନାହିଁ !

ତା'ପରେ ଯୋଗୀନ୍ଦ୍ର ଜମାରେ ସବୁ କାମ ବୁଝାଇଦେଇ ଦିନୁ ନିଜ ଗାଁକୁ ଫେରି ଆସିଲା ।

ଦୁଇଦିନ ପରେ ଯୋଗୀନ୍ଦ୍ର ଦିନୁ ଘରେ ଆସି ପହଞ୍ଚିଲା । ଆଖିରୁ ଲୁହ ବହିଯାଉଛି । ଯୋଗୀନ୍ଦ୍ରର ଏପରି ଅବସ୍ଥା ଦେଖି ଦିନୁ ପଚାରିଲା, "କଥା କ'ଣ । ଏତେ ଦୁଃଖ କରୁଛ କାହିଁକି ?"

"ବାବୁ; କହିବି ଆଉ କ'ଣ ? ମୁଁ ଯେଉଁ ନୌକାମାନଙ୍କରେ ଶସ୍ୟ ଲଦି ଆଣୁଥିଲି ସେସବୁ ଭଅଁରରେ ପଡ଼ି ବୁଡ଼ିଗଲେ । ଭଗବାନଙ୍କ ଦୟାରୁ ଆମେ ଜୀବନ ବଞ୍ଚାଇ ଫେରି ଆସିଛୁ ।" ଯୋଗୀନ୍ଦ୍ର କହିଲା ।

ଏ କଥା ଶୁଣି ଦିନୁ [illegible]ରେ ହାତ ଦେଇ ବସିପଡ଼ିଲା । ଏଠୁ ସେଠୁ ଧାର୍ କରଜ କରି ଏକାଠି ଏତେ ଶସ୍ୟ କିଣିଥିଲା, ତା'ର ପରିଣତି ଇଏ କ'ଣ ହେଲା ! ସବୁ ଜିନିଷ ପାଣିରେ ପଡ଼ିଲା । ସେ ଅତି ଦୁଃଖିତ ହୋଇ ଭାଇମାନଙ୍କ ପାଖକୁ ଯାଇ ନିଜର ଦୁଃଖ କହିଲା । ଭାଇମାନେ କହିଲେ, "ତୁ ଏତେ ଟଙ୍କା ଧାର୍ କରି ବ୍ୟବସାୟ କରିବାକୁ ତ ଆମେ କହି ନ ଥିଲୁ । ଠିକ୍ ଅଛି । ଯଦି କରଜ କରିଛୁ, ତେବେ ଆମ ସହିତ ତୋର ଯାହା ଜମିଯାଗା ଅଛି ନେଇ ବନ୍ଧା ଭିକା କରି ଟଙ୍କା ଆଣି ଯାହା କରିବା କଥା କର ।"



ତା'ପରେ ଦିନୁ ତା' ଭାଗ ଜମିତକ ନେଇ ଓ ଅନ୍ୟାନ୍ୟ ଘରବାଡ଼ି ଯାହା କିଛି ଥିଲା ସବୁ ବିକି କରି ଋଣଦାତାଙ୍କଠାରୁ ମୁକ୍ତି ପାଇଲା । ସେଦିନଠାରୁ ତା'ର ଗର୍ବ ଭାଙ୍ଗିଗଲା ।

ବର୍ତ୍ତମାନ ଗୃହହୀନ ଦିନୁ ଯୋଗୀନ୍ଦ୍ର ଘରେ ଆଶ୍ରୟ ନେଲା । କିନ୍ତୁ ଦିନୁର ସ୍ତ୍ରୀ ପର ଘରେ ନିଜର ଧନହୀନତା ଯୋଗୁ ରହିବାକୁ ପସନ୍ଦ ନ କରି ତା' ବାପ ଘରକୁ ଚାଲିଗଲା ।

ଯୋଗୀନ୍ଦ୍ର ଦିନେ ଦିନୁକୁ ଡାକି କହିଲା, "ମୋର ଗୁରେଟି ହୁଆ । ମୁଁ କାମ କରି ପେଟ ପୋଷେ । ତୁମେ ମଧ୍ୟ ସେଇଆ କର ।" ଏ କଥା କହି ସେ ତାକୁ ଗୋଟିଏ ରାଜମିସ୍ତ୍ରି ପାଖକୁ ନେଇଗଲା । ରାଜମିସ୍ତ୍ରି ଦୁହିଁଙ୍କୁ ମାଟି ବୋହିବା କାମ ଦେଲା ।

ଧନୁପାଇଁ ସେ କାମ ଲଜ୍ଜାଜନକ ନ ହେଲେ ମଧ୍ୟ ଲାଭଜନକ ହେଲା ନାହିଁ । ତେଣୁ ସେ ମିସ୍ତ୍ରିକୁ ପଗ୍ଚରିଲା, ମୁଁ ମଧ୍ୟ ମିସ୍ତ୍ରି ହେବାକୁ ଚାହେଁ । ମୋତେ ମଧ୍ୟ ଘର ତିଆରି କରିବା ଶିଖାଇଦିଅ ।"

ମିସ୍ତ୍ରି ଥଟ୍ଟା କରି ହସି ହସି କହିଲା, "ଓହୋ, ତୁ ମୋ ଭଳିଆ ହେବାକୁ ପୁଣି ଇଚ୍ଛା କରୁଛୁ ? ତୋତେ ତ ଇଟା ମାଟି ବୋହିବା କାମ ମିଳି-ଗଲା; ସେ କାମସବୁ ପୁଣି କିଏ କରିବ ?"

ଧନୁ ଠିକ୍ ଏମିତି କଥା ଅନ୍ୟକୁ କହିଥିଲା । ତେଣୁ ସେଦିନ ସେ କଥା ମନେ ପଡ଼ିବାରୁ ସେ ନିଜର ଭୁଲ ଉପଲବ୍ଧି କଲା ।

ଅଳ୍ପଦିନ ଭିତରେ ଘରତୋଳା ସରିଲା । ଧନୁକୁ ଲୁଚାଇ ଯୋଗୀନ୍ଦ୍ର ଧନୁର ଶ୍ୱଶୁରଘରକୁ ଖବର ପଠାଇଲା କି ଧନୁର ବ୍ୟବସାୟରେ ଖୁବ୍ ଲାଭ ହୋଇଛି । ସେ ଏକ ନୂଆ ଘର ତୋଳିଛି । ତେଣୁ ଗୃହପ୍ରବେଶ ଦିନ ଧନୁର ସ୍ତ୍ରୀ ଯେପରି ଠିକ୍ ସମୟରେ ଆସି ପହଞ୍ଚେ ।

ଏପରି ଖବର ପାଇ ଧନୁର ସ୍ତ୍ରୀ ଆସି ପହଞ୍ଚିଲା । ଯୋଗୀନ୍ଦ୍ର ଧନୁ ଓ ତା' ସ୍ତ୍ରୀକୁ ସ୍ନାନ କରାଇଲା ଓ ନୂଆ ଲୁଗା ପିନ୍ଧାଇ ପିଢ଼ାରେ ବସାଇଲା । ପୁରୋହିତ ଆସି ମନ୍ତ୍ର ପଢ଼ିଲେ । ଅନ୍ୟମାନେ ସବୁ ଆସି ଅନେକ ଉପହାର ଦେଲେ ।

ଧନୁ ବୁଝିପାରିଲା ନାହିଁ ଯେ ଏ ସବୁର ଅର୍ଥ କ'ଣ । ସମସ୍ତେ ଭୋଜି ଖାଇ ଗଲା ପରେ ଧନୁ ପାଖରେ ବସି ଯୋଗୀନ୍ଦ୍ର ବୁଝାଇଲା, "ବାବୁ, ଏହି ଘରଟି ହେଉଛି ଆପଣଙ୍କର । ଆପଣଙ୍କର ନୌକାଗୁଡ଼ିକ ନଦୀରେ ବୁଡ଼ିଯାଇ ନ ଥିଲା । କିନ୍ତୁ ଆପଣଙ୍କ ବ୍ୟବହାର ଓ ମନୋଭାବ ବଦଳାଇବା ପାଇଁ ଆମେସବୁ ଏପରି ନାଟକ ରଚନା କରିଥିଲୁ ।"

ଏ କଥା ଶୁଣି ଧନୁ କହିଲା — "ଯୋଗୀନ୍ଦ୍ର ! ତୋର ମଧ୍ୟ ମୋ ଭଳି ସବୁକିଛି ହେବା ଉଚିତ ।" ଏ କଥା କହି ସେ ତା'ର ବ୍ୟବସାୟ ଓ ଘରବାଡ଼ିରୁ ଅର୍ଦ୍ଧେକ ତାକୁ ଦେଲା । ଧନୁର ଏପରି ପରିବର୍ତ୍ତନ ଦେଖି ତା'ର ଭାଇମାନେ ଖୁସି ହେଲେ ।






# ଭୂତକୋଠିର ବାସିନ୍ଦା

ରାମପୁର ଗ୍ରାମର ଲୋକେ ଦୁଇଟି ବିଷୟ ଯୋଗୁଁ ଖୁବ୍ ଭୟଭୀତ ହୋଇ ଥା'ନ୍ତି । ଗୋଟିଏ ଭୂତ ଭୟ ଓ ଅନ୍ୟଟି ଚୋରର ଭୟ । ଗ୍ରାମର ସୀମାନ୍ତରେ ଏକ ପୁରୁଣା ଭଙ୍ଗା ରାଜବାଟୀ ଥାଏ । ଲୋକଙ୍କର ବିଶ୍ୱାସ ସେଇଟା ଭୂତମାନଙ୍କର ଆଡ୍ଡା ଜାଗା । ସେଥିପାଇଁ ସନ୍ଧ୍ୟା ପରେ ସେମାନେ ବେଶୀ ଘରୁ ବାହାରନ୍ତି ନାହିଁ । ଚୋରମାନଙ୍କ ପାଇଁ ସେଇଟା ଥିଲା ଆହୁରି ସୁବିଧା ।

ଏପରି ଅବସ୍ଥାରେ ଥରେ କିଶନ୍ ବୋଲି ଜଣେ ଯୁବକ କୁକୁରଟିଏ ଧରି ଆସି ସେଇ ଗାଁରେ ପହଞ୍ଚିଲା । କିଶନ୍‌ର ସ୍ୱଭାବ ଥିଲା ସର୍ବଦା ପରୋପକାର କରିବା । ଯିଏ ବିପଦରେ ପଡ଼େ ସେ ତା'ର ପାରୁପର୍ଯ୍ୟନ୍ତ ତାକୁ ସାହାଯ୍ୟ କରେ । ତେଣୁ ରାମପୁର ଗ୍ରାମର ଭୟ ବିଷୟ ଶୁଣି ସେ ସେଠାରେ କିଛିଦିନ ରହିବାକୁ ମନସ୍ଥ କଲା ।

କିଶନ୍ ଗ୍ରାମରେ ନରହି ସେହି ପୁରୁଣା ରାଜବାଟୀରେ ତା' କୁକୁର ସହିତ ରହିଲା ଓ ଚାରିଆଡ଼େ ବୁଲି ଲକ୍ଷ୍ୟ କରି ଦେଖିଲା କୌଣସି ଭୂତପ୍ରେତ ନାହାନ୍ତି କେବଳ ଘରଟି ନିତାନ୍ତ ପୁରୁଣା । ଏଇ ଭୂତକୋଠି ଯୋଗୁ ଚୋରି ମଧ୍ୟ ବଢ଼ୁଛି, ଏକଥା ସେ ଜାଣିପାରି ଦୁଇଟି ଭୟକୁ ଘୁଞ୍ଚାଇବାକୁ ଚେଷ୍ଟା କଲା ।

ଗ୍ରାମର ମୁଖିଆଙ୍କ ପାଖକୁ ଯାଇ କିଶନ୍ ପ୍ରସ୍ତାବ କଲା, ଗ୍ରାମରେ ପ୍ରଚାର କରି ଦିଆଯାଉ ଯେ ସନ୍ଧ୍ୟା ପରେ କେହି ଘରୁ ବାହାରିବେ ନାହିଁ । ସେତେବେଳେ କିଶନ୍ ବୁଲି ବୁଲି ଦେଖିବ ଆଉ ଯିଏ ବାହାରେ ଥିବ ସେ ତାକୁ ଧରିବ । ଗ୍ରାମର ମୁଖିଆ ତା' କଥାରେ ରାଜି

ବିଶ୍ୱନାଥ



ହେଲେ ଓ ସେହି ଅନୁସାରେ କାର୍ଯ୍ୟ କଲେ ।

ସେହି ଦିନଠୁ ସାରାରାତି କଣନ୍ ଗ୍ରାମସାରା ବୁଲି ବୁଲି ଦେଖେ । ଯାହାକୁ ବାହାରେ ଦେଖେ ଧରି ନେଇ ଭୂତ କୋଠିରେ ବାନ୍ଧି ପକାଏ, ସକାଳ ହେଲେ ଛାଡ଼ିଦିଏ । ଏହି ଯୋଜନା ଅନୁସାରେ ପ୍ରତିଦିନ ଦୁଇଚାରିଜଣ କରି ଭୂତ କୋଠିରେ ରାତି ବିତାଇ ଆସନ୍ତି ।

ତଦ୍ୱାରା ଗ୍ରାମବାସୀଙ୍କର ଦୁଇପ୍ରକାର ଉପକାର ହେଲା । ସାରାରାତି କଣନ୍ ପହରା ଦେବାରୁ ଚୋରି ବନ୍ଦ ହେଲା । ଦ୍ୱିତୀୟରେ ଯେଉଁମାନଙ୍କୁ ଭୂତ କୋଠିରେ ରାତିରେ ରଖା ହେଉଥିଲା ସେମାନେ ବୁଝୁଥିଲେ ଯେ ପ୍ରକୃତରେ ସେଠାରେ କୌଣସି ଭୂତ ନାହିଁ ଖାଲି ମନର କଳ୍ପନା ।

କିନ୍ତୁ ଗ୍ରାମର କେତେକ ଲୋକ ଅଭିଯୋଗ କଲେ ଯେ ଚୋରି ନ କରି ମଧ୍ୟ ରାତି ରାତି ଏ ଭୂତ କୋଠିରେ କାହିଁକି ସେମାନଙ୍କୁ ବନ୍ଦୀ କରାହୋଇ ରଖାଗଲା ? କଣନ୍ ମୁଖିଆଙ୍କୁ ବୁଝାଇ ଦେଲା ଯେ ସେଇଟା ସେମାନଙ୍କ ମଙ୍ଗଳ ପାଇଁ । ସେମାନଙ୍କ ମନରୁ ଭୂତଭୟ ଛାଡ଼ିଗଲେ ଆପେ ଆପେ ଚୋର ଭୟ ମଧ୍ୟ ଛାଡ଼ିଯିବ ।

କଣନ୍ କଥାର ସତ୍ୟତା ଉପଲବ୍ଧି କରି ମୁଖିଆ ଓ ଅନ୍ୟଗ୍ରାମବାସୀମାନେ ତାକୁ ଖୁବ୍ ଅଭ୍ୟର୍ଥନା କଲେ ।

କିନ୍ତୁ ଏହି ଘଟଣାର ପରଦିନ ଦୁଇ ଜଣ ଯୁବକ ଭୂତକୋଠିକୁ ଆସି କଣନ୍ ସହିତ ଦେଖା କରି କହିଲେ, "ଭାଇ, ଆମେ ଶୁଣିଲୁ ଆପଣ ଚୋର ଓ ଭୂତ ଭୟରୁ ଗ୍ରାମକୁ ମୁକ୍ତ କଲେ । ଆଚ୍ଛା ଯେଉଁ ଲୋକ ଜନ୍ମରୁ ଚୋର ଓ ଚୋରି ଯାହା ଜୀବନର ଏକମାତ୍ର ପନ୍ଥା ତା' ପାଖରୁ ଗ୍ରାମକୁ କାହିଁକି ମୁକ୍ତ କରୁନାହାନ୍ତି ?"

"ଏପରି କ'ଣ କେହି ବି ଥାଇ ପାରେ ? ଯଦି ଥାଏ ସେ କିଏ ?" କଣନ୍ ପଚାରିଲା । ଯୁବକ ଦୁହେଁ କହିଲେ, "ଭାଇ, ଆମ ବାପାଙ୍କ ନାମ ଗୋପୀନାଥ । ସେ ବର୍ତ୍ତମାନ ମୃତ । ସେ ବଞ୍ଚିଥିବା ବେଳେ ଗ୍ରାମର ଜମିଦାରଠାରୁ ଚାରି ହଜାର ଟଙ୍କା କରଜ କରିଥିଲେ ଓ ସେଥି

ପାଇଁ ଋଣପତ୍ର ଲେଖି ଦେଇ ଥିଲେ । ତା'ପରେ ଆମ ବାପା ସବୁ ଟଙ୍କା ଶୁଝିବା ପରେ ମଧ୍ୟ ଜମିଦାର ଋଣପତ୍ରଟି ଫେରସ୍ତ ଦେଲା ନାହିଁ । କିଛିଦିନ ପରେ ବାପା ମରିବା ସମୟରେ ଆମକୁ ପାଖକୁ ଡ଼ାକି ଋଣପତ୍ର ଜମିଦାରଠାରୁ ଫେରାଇ ଆଣିବାକୁ କହିଲେ ।

ଜମିଦାର ଋଣପତ୍ର ତ ଫେରସ୍ତ ଦେଲା ନାହିଁ ଓଲଟା ସେହି ଟଙ୍କା ଉପରେ ସୁଧ ବସାଇ ମକଦ୍ଦମା କରି ଘର ଜାଗା ମାଡ଼ି ବସିଲା । ବର୍ତ୍ତମାନ ସେ ସେହି ଘରେ ରହୁଛି ଓ ଆମକୁ କାଙ୍ଗାଳ କରି ଘୁରୁଛି ।"

"ଭାଇ, ତୁମେ ଦୁହେଁ ଯାହା କହିଲ ମୁଁ ତା'ର ସତ୍ୟତା ବୁଝି ଯାହା କରିବାର କରିବି । ତୁମେ ବର୍ତ୍ତମାନ ଯାଇପାର ।" କର୍ଣନ୍ କହିଲା । ସେମାନେ ଗଲା ପରେ ସେ କିଛି ଭାବି ଠିକ୍ କଲା । ରାତିରେ ଯାଇ କର୍ଣନ୍ ଜମିଦାର ଘରେ ସିନ୍ଧି କରି କାନ୍ଥ ଫୁଟାଇ ଦେଲା କିନ୍ତୁ କିଛି ଚୋରି କଲା ନାହିଁ ।

ପରଦିନ କର୍ଣନ୍ ସକାଳେ ଗ୍ରାମର ମୁଖିଆଙ୍କ ପାଖକୁ ଯାଇ ଜମିଦାରକୁ ଡାକିବାକୁ କହିଲା । ଜମିଦାର ସେଠାରେ ପହଞ୍ଚି କର୍ଣନ୍‌କୁ କହିଲା, "ଦେଖ, ଭାଇ, ତୁମେ ନା କହୁଥିଲ ଗ୍ରାମରୁ ସବୁ ଚୋରଭୟ ଗଲାଣି ? କାଲି ରାତିରେ କିଏ ମୋ ଘରେ ସିନ୍ଧି କରିଛି ।"



"ଜମିଦାର ବାବୁ, ଏ କାମ ଚୋରର ନୁହେଁ, ଭୂତର ।" କର୍ଣନ୍ କହିଲା ।

"ଏଁ, ଭୂତର କାମ ? ତୁମେ କମିତି ଜାଣିଲ ?" ଜମିଦାର ପଚାରିଲା ।

"ଆଜ୍ଞା, ମୁଁ ତ ଖୋଦ୍ ଭୂତକୋଠିରେ ରହୁଛି ।" କର୍ଣନ୍ କହିଲା ।

"ହଁ ତୁମେ ଠିକ୍ କହୁଛ । ତେବେ ଭୂତମାନେ ତୁମ ସହିତ କିଛି ଗୋଳମାଳ କରନ୍ତି ନାହିଁ ?" ଜମିଦାର ପଚାରିଲା ।

"ମୁଁ ଯଦି ସେମାନଙ୍କର କିଛି ଅପକାର କରେ ତେବେ ସିନା ସେମାନେ ମୋତେ ହଇରାଣ କରିବେ । ମୁଁ ତ ତାଙ୍କର କିଛି

ଅପକାର କରନ୍ତ । କିନ୍ତୁ, ହଁ, କାଲି ରାତିରେ ଗୋପୀନାଥ ନାମରେ ଜଣେ ଭୂତ କହୁଥିଲା ଯେ କିଏ ତା'ର ଖୁବ୍ ଅପକାର କରିଛି । ସିଏ ଆପଣଙ୍କୁ ଦିନେ ରାତିରେ ସେଠାକୁ ଯିବାପାଇଁ କହୁଛି ।" କିଶନ୍ କହିଲା ।

ଏକଥା ଶୁଣି ଜମିଦାରଙ୍କ ମୁହଁ ଶୁଖିଗଲା ଓ ସେ ଭୟରେ ଥରିଲେ ।

"ଶୁଣନ୍ତୁ, ଭୂତମାନେ ତ ବହୁତ ଭଲ । ଆଜି ରାତିକୁ ଆପଣ ମୋ ସହିତ ସେଠାକୁ ଚାଲନ୍ତୁ । ଗୋପୀନାଥ ଆପଣଙ୍କୁ କ'ଣ କ'ଣ କହିବ ସେ କଥା ମୁଁ ଶୁଣିବାକୁ ଚାହୁଁଛି ।" କିଶନ୍ କହିଲା ।

"ଠିକ୍ କଥା ଜମିଦାରବାବୁ, ଆପଣ ଭୂତ ସହିତ କଥା କହିବାର ଏ ସୁଯୋଗ ହରାନ୍ତୁ ନାହିଁ ।" ମୁଖିଆ କହିଲେ ।

"ବାପ୍‌ରେ ବାପ୍ । ଗୋପୀନାଥ ମୋତେ ମାରି ପକାଇବ । ସେଇ ବୋଧେ ମୋ ଘରେ ସିନ୍ଧ କାଟିଛି ।" ଜମିଦାର କହିଲେ ।

"ଗୋପୀନାଥ ସହିତ ଆପଣଙ୍କର ଶତ୍ରୁତାର କାରଣ କ'ଣ ?" ମୁଖିଆ ପଚାରିଲେ ।

ମୋଠାରୁ ସେ ଟଙ୍କା ଋଣ ନେଇଥିଲା; ସୁଝି ମଧ୍ୟ ଦେଇଥିଲା କିନ୍ତୁ ଋଣପତ୍ର ଫେରାଇବା ପୂର୍ବରୁହିଁ ସେ ମରିଗଲା । ତା'ପରେ ଲୋଭରେ ପଡ଼ି ମୁଁ ସେଇ ଟଙ୍କା ଉପରେ ମକଦ୍ଦମା କରି ତା'ର ଘର ଦଖଲ କରି ରହିଛି ଆଉ ତା' ପୁଅମାନଙ୍କୁ ଅନାଥ କରି ତଡ଼ି ଦେଇଛି । ସେଥି ପାଇଁ ସେ ପ୍ରତିଶୋଧ ନେବାକୁ ଚାହୁଁଛି ।" ଜମିଦାର ଥରି ଥରି କହିଲେ । "ଓହୋଃ, ଏଇକଥା ? ତେବେ ବର୍ତ୍ତମାନ ଆପଣ ଗୋପୀନାଥର ପୁଅ ଦୁହିଁଙ୍କୁ ଘରଟି ଫେରାଇ ଦିଅନ୍ତୁ ଓ ଦଣ୍ଡସ୍ୱରୂପ ହଜାରେ ଟଙ୍କା ଦିଅନ୍ତୁ; ତେବେ ମୁଁ ଗୋପୀନାଥକୁ ବୁଝାଇ ଦେବି, ସେ ଆପଣଙ୍କର କିଛି କ୍ଷତି କରିବ ନାହିଁ ।" କିଶନ୍ ବୁଝାଇଲା ।

ଜମିଦାର ଏଥିରେ ରାଜି ହେଲେ ଓ ଋଣପତ୍ର ସହିତ ଘର ଓ ହଜାରେ ଟଙ୍କା ଗୋପୀନାଥର ଦୁଇପୁଅଙ୍କୁ ଫେରାଇଲେ । ଏହି ଘଟଣାର ପରଦିନହିଁ କିଶନ୍ କୁକୁରଟିକୁ ସଙ୍ଗରେ ଧରି ସେହି ଗ୍ରାମ ଛାଡ଼ି ପୁଣି ଦେଶ ପର୍ଯ୍ୟଟନରେ ବାହାରିଗଲା ।





# ଜୀବନର ଉପଯୋଗ

ପ୍ରାଚୀନ କାଳରେ ତକ୍ଷଶିଳା ବିଶ୍ୱବିଦ୍ୟାଳୟ ଖୁବ୍ ପ୍ରସିଦ୍ଧ ଥିଲା । ଥରେ ସେଠାରେ ଏକ ସ୍ନାତକୋତ୍ସବରେ ଭାଷଣ ଦେଇ ଜଣେ ବୃଦ୍ଧ ଆଚାର୍ଯ୍ୟ କହିଲେ, "ମାନବଜନ୍ମ ଅତି ଉତ୍କୃଷ୍ଟ । ତେଣୁ ତାକୁ ଦୁରୁପଯୋଗ କରିବା ଉଚିତ୍ ନୁହେଁ । ଯଦି ମଣିଷ ନିଜ ଜୀବନକୁ ଉତ୍ସର୍ଗ କରେ ସୁକାର୍ଯ୍ୟ ପାଇଁ ତେବେ ତଦ୍ୱାରା ଦେଶର, ସମାଜର, ଅନ୍ୟମାନଙ୍କର ଓ ନିଜର ମଧ୍ୟ ମଙ୍ଗଳ ହୁଏ । ତେଣୁ ନିଜ ଜୀବନ ଯେପରି ବ୍ୟର୍ଥ ଜୀବନ ନ ହୁଏ ଏପରି କାର୍ଯ୍ୟ କରିବା ଉଚିତ ।"

ଜଣେ ବିଦ୍ୟାର୍ଥୀ ପ୍ରଶ୍ନ କଲେ, "ଆଚାର୍ଯ୍ୟ ମହାଶୟ, କୃପାକରି କୁହନ୍ତୁ କେଉଁ ପ୍ରକାର ଜୀବନକୁ ବ୍ୟର୍ଥଜୀବନ କୁହାଯିବ ।"

"ସେଥି ପାଇଁ ମୁଁ ତୁମକୁ ଗୋଟିଏ ଉଦାହରଣ ଦେଉଛି ।" ଆଚାର୍ଯ୍ୟ ମହାଶୟ ଗଳ୍ପଟି ଆରମ୍ଭ କଲେ, "ପ୍ରାଚୀନ କାଳର କଥା । ଅଙ୍ଗ ଦେଶରେ ରାଜା ସୁନନ୍ଦ ଶାସନ କରୁଥିଲେ । ରାଜା ସୁଦକ୍ଷ ଶାସକ ଥିଲେ ମଧ୍ୟ କୌଣସି ଅନିବାର୍ଯ୍ୟ କାରଣବଶତଃ ହଠାତ୍ ରାଜ୍ୟରେ ଅରାଜକତା ଦେଖା ଦେଲା । ସେହି ସୁଯୋଗରେ ଶତ୍ରୁମାନେ ମଧ୍ୟ ରାଜ୍ୟ ସୀମାରେ ଗୋଳମାଳ ଆରମ୍ଭ କରି ଦେଲେ । ତେଣୁ ରାଜାଙ୍କୁ ବାଧ୍ୟ ହୋଇ ଏକ ସଙ୍ଗରେ ଶତ୍ରୁମାନଙ୍କୁ ଓ ରାଜଦ୍ରୋହୀମାନଙ୍କୁ ଦମନ କରିବାକୁ ପଡ଼ିଲା । କିନ୍ତୁ ତାହା ଥିଲା ଖୁବ୍ କଠିନ ବ୍ୟାପାର । ତଥାପି ସେ ନିରାଶ ନ ହୋଇ ନାନା ପ୍ରକାର ଉପାୟ ବାହାର କଲେ । ପ୍ରଥମେ ସେ ରାଜ୍ୟରୁ ସାହସୀ ଯୁବକମାନଙ୍କୁ ସୈନ୍ୟ ବିଭାଗରେ ଦେଲେ ।

ତାଙ୍କ ରାଜ୍ୟରେ ଧନୁବିଦ୍ୟାରେ ପ୍ରବୀଣ ଦୁଇଜଣ ଶିକାରୀ ଥିଲେ । ସେନାପତି ରାଜାଙ୍କୁ ସେ ଦୁଇଜଣଙ୍କୁ ସୈନ୍ୟ ବିଭାଗରେ ନେବାପାଇଁ କହିଲେ । ସେନାପତିଙ୍କର ଇଚ୍ଛା ଥିଲା ସେ ଦୁଇଜଣଙ୍କୁ ଶତ୍ରୁ ପ୍ରବେଶ କରିବାର ଘାଟିରେ ଗଛ ଉପରେ ବସାଇ ଦେଲେ ସେମାନେ ତୀରମାରି ଶତ୍ରୁସୈନ୍ୟଙ୍କୁ ଘଉଡ଼ାଇ ଦେବେ ।

ରାଜାଙ୍କ ସିପାହୀମାନେ ସେମାନଙ୍କୁ ଖୋଜିବାକୁ ଚାଲିଗଲେ । କିନ୍ତୁ ସେ ଦୁହେଁ କେଉଁଠୁ ଖବର ପାଇ ଲୁଚି ବଣକୁ ଚାଲିଗଲେ । କାରଣ ସେମାନେ ଭାବିଲେ ଲଢ଼େଇରେ ଭଲ ମନ୍ଦ ଦୁଇଟା ଅଛି । ତା' ଅପେକ୍ଷା ବଣରେ ବୁଲି ସ୍ୱାଧୀନ ଭାବରେ ଶିକାର କରି ଖାଇଲେ ତ ଭଲ । ସେମାନଙ୍କର ଶିକାର ପାଇଁ ଯେଉଁ ଉତ୍ସାହ ଓ ଆନନ୍ଦ ଥିଲା ଯୁଦ୍ଧ ପାଇଁ ସେସବୁ ନ ଥିଲା ।

ଯାହା ହେଉ ସିପାହୀ ଆଖିରେ ଧୂଳି ଦେଇ ସେମାନେ ଜଙ୍ଗଲକୁ ଗଲେ ସିନା, ସେଠାରେ ସାରାଦିନ ଗୋଟିଏ ବି ଶିକାର ମିଳିଲା ନାହିଁ । ସନ୍ଧ୍ୟା ବେଳକୁ ହଠାତ୍ ଗୋଟିଏ ହରିଣ କାହୁଁ ଆସି ଦେଖା ଦେଲା । ଦୁହେଁ ଅତି ଉତ୍ସାହରେ ତୀର ବିନ୍ଧି ତାକୁ ମାରି ପକାଇଲେ; କିନ୍ତୁ ଦୁହିଁଙ୍କ ଉତ୍ସାହର ଶେଷ ପରିଣତି ଦେଖା ଦେଲା କଳହରେ । ଦୁହେଁ ହରିଣ ଉପରେ ଅଧିକାର ସାବ୍ୟସ୍ତ କରିବାରୁ କଳହ ଭୀଷଣରୂପ ଧାରଣ କଲା ଓ ଅବଶେଷରେ ପରସ୍ପର ତୀକ୍ଷ୍ଣ ବାଣରେ ଦୁହେଁ ଜୀବନ ଦେଲେ ।

ବୃଦ୍ଧ ଆଚାର୍ଯ୍ୟ ଗଳ୍ପଟି ଶୁଣାଇ ସାରି କହିଲେ "ସେହି ଦୁଇ ଶିକାରୀଙ୍କ ଜୀବନ ବ୍ୟର୍ଥ । ଯଦି ସେମାନେ ନିଜ ଜୀବନକୁ ଯୁଦ୍ଧ କ୍ଷେତ୍ରରେ ହରାଇ ଥା'ନ୍ତେ ତେବେ ସେମାନେ ଦେଶପାଇଁ ପ୍ରାଣ ଉତ୍ସର୍ଗ କରିବା ସକାଶେ ଯଶ ଲାଭ କରିଥା'ନ୍ତେ, ଓ ସେମାନଙ୍କୁ ବୀରମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ୱର୍ଗ ମଧ୍ୟ ମିଳିଥା'ନ୍ତା ।"





# ବୀର ହନୁମାନ

ଚଉଦ ବର୍ଷ ତଳେ, ଶୁକ୍ଳ ପଞ୍ଚମୀ ଦିନ ରାମ ବନବାସ ଉଦ୍ଦେଶ୍ୟରେ ଅଯୋଧ୍ୟା ତ୍ୟାଗ କରିଥିଲେ । ବର୍ତ୍ତମାନ ପ୍ରତ୍ୟାବର୍ତ୍ତନ ପଥରେ ଶୁକ୍ଳ ପଞ୍ଚମୀ ଦିନ ସେ ଆସି ଋଷି ଭରଦ୍ୱାଜଙ୍କ ଆଶ୍ରମରେ ପହଞ୍ଚିଲେ । ଋଷିଙ୍କୁ ପ୍ରଣାମ କରି ସେ ପଚାରିଲେ, "ଋଷିବର ! ଅଯୋଧ୍ୟାର ସମାଚାର ଶୁଭ ତ ? ଭରତ ଉତ୍ତମରୂପେ ରାଜ୍ୟ ଶାସନ କରୁଛନ୍ତି ତ ? ମୋ ମାତାଙ୍କର ସବୁ କୁଶଳ ତ ?"

ଭରଦ୍ୱାଜ ଉତ୍ତର ଦେଲେ, "ଭରତ ବିଳାସ ବ୍ୟସନରେ ନ ମାତି ତୁମ ପାଦୁକା ସିଂହାସନରେ ଥାପି ତୁମ ପ୍ରତିନିଧି ରୂପେ ଶାସନ କରୁଛନ୍ତି । ସେ ତୁମ ପ୍ରତୀକ୍ଷାରେ ଦିନ ଗଣୁଛନ୍ତି । ପ୍ରଜାବର୍ଗ ସୁଖରେ କାଳ କାଟୁଛନ୍ତି ।"

ଭରଦ୍ୱାଜଙ୍କ ଅନୁରୋଧ କ୍ରମେ ରାମ ତାଙ୍କ ଆଶ୍ରମରେ ଗୋଟିଏ ଦିନ ରହିଲେ । ସେତିକି-ବେଳେ ସେ ହନୁମାନଙ୍କୁ ଡାକି କହିଲେ, "ତୁମେ ମୋର ଆଗୁଆ ଦୂତ ରୂପେ ଯାଅ । ପ୍ରଥମେ ଶୃଙ୍ଗବେରପୁରରେ ପହଞ୍ଚି ଭିଲ ରାଜା ଗୁହଙ୍କୁ ସବୁ ବୃତ୍ତାନ୍ତ ଶୁଣାଇବ । ଯୁଦ୍ଧରେ ବିଜୟ ଲାଭ କରି ଆମେ ରାଜ୍ୟକୁ ଫେରୁଛୁଁ ଜାଣିଲେ ପରମ ଶୁଭେଚ୍ଛୁ ଗୁହ ଅତ୍ୟନ୍ତ ଆନନ୍ଦିତ ହେବେ । ସେ ତୁମକୁ ଅଯୋଧ୍ୟା ମାର୍ଗ କହିଦେବେ । ତୁମେ ଅଯୋଧ୍ୟାରେ ଉପନୀତ ହୋଇ ଭରତଙ୍କୁ ସବୁ ଖବର ଦେବ । ରାବଣ ସହ କିପରି ଆମର ପ୍ରବଳ ଲଢ଼େଇ ହେଲା । ରାକ୍ଷସ ସଂହାର କରି ସୀତାଙ୍କୁ କିପରି ଉଦ୍ଧାର କରାଗଲା, ସବୁ କଥା



କହିବ ଏବଂ ତାଙ୍କ ମନରେ କିପରି ପ୍ରତିକ୍ରିୟା ହେଉଛି, ତାହା ସତର୍କ ଭାବରେ ଲକ୍ଷ୍ୟ କରିବ । ମୁଁ ମୋର ପ୍ରବଳ ପରାକ୍ରମୀ ମିତ୍ରମାନଙ୍କୁ ଧରି ଅଯୋଧ୍ୟା ଫେରୁଛି, ଏ କଥା ଶୁଣି ଭରତଙ୍କ ମନୋଭାବ କ'ଣ ହେବ, ତାହା ଜାଣିବା ଏକାନ୍ତ ପ୍ରୟୋଜନ । ଏତେବର୍ଷ ରାଜ୍ୟ ଶାସନ କରିବା ଭିତରେ ରାଜ୍ୟ ପ୍ରତି ଆସକ୍ତି ଆସିଯିବା ଅସ୍ୱାଭାବିକ ନୁହେଁ । ତାହା ଯଦି ହୋଇଥାଏ, ତେବେ ଆମେ ଭରତଙ୍କୁ ରାଜ୍ୟ ଛାଡ଼ିଦେବାହିଁ ଉଚିତ ହେବ । ତେଣୁ ମୁଁ ହଠାତ୍ ପହଞ୍ଚିଯାଇ ସିଂହାସନ ଆରୋହଣ କରିବା ଅପେକ୍ଷା ପ୍ରଥମେ ତାଙ୍କ ପ୍ରତିକ୍ରିୟା ଜାଣିନେବା ବିବେକ ସମ୍ମତ ପନ୍ଥା ହେବ ବୋଲି ମୁଁ ଭାବୁଛି ।"

ରାମଙ୍କ ନିର୍ଦ୍ଦେଶ ପାଇବା ମାତ୍ରେ ହନୁମାନ ଆକାଶ ମାର୍ଗରେ ଅଗ୍ରସର ହେଲେ । ପ୍ରଥମେ ସେ ପହଞ୍ଚିଲେ ଶୃଙ୍ଗବେରପୁରଠାରେ । ଭିଲ ରାଜା ଗୁହଙ୍କୁ ଭେଟି ସେ କହିଲେ, "ଶୁଣ, ମୁଁ ଶ୍ରୀରାମଚନ୍ଦ୍ରଙ୍କ ବାର୍ତ୍ତା ନେଇ ଆସିଛି । ଆଜି ରାତିକ ସେ, ସୀତା ଓ ଲକ୍ଷ୍ମଣ ଭରଦ୍ୱାଜଙ୍କ ଆଶ୍ରମରେ ଅବସ୍ଥାନ କରି ପ୍ରତ୍ୟୁଷରୁ ଅଯୋଧ୍ୟା ଅଭିମୁଖେ ବାହାରିବେ । ତୁମ ସହ ଅବିଳମ୍ବେ ଭେଟ ହେବ ।"

ଏତିକି ସମ୍ବାଦ ଦେଇସାରି ହନୁମାନ ନନ୍ଦିଗ୍ରାମ ଅଭିମୁଖେ ଉଡ଼ି ଚାଲିଲେ । ନନ୍ଦିଗ୍ରାମକୁ ଘେରି ରହିଥିଲା ଅତ୍ୟନ୍ତ ରମଣୀୟ ବୃକ୍ଷଲତା । ସେଠାରୁ ଅଯୋଧ୍ୟା ବେଶୀ ଦୂର ନୁହେଁ । ସେହିଠାରେ ଭରତ ରହି ରାମଙ୍କୁ ଅପେକ୍ଷା କରୁଥିଲେ । ସମୟ ଅତୀତ ହୋଇ ଯାଇଥିଲେ ବି ରାମ କାହିଁକି ଫେରୁନାହାଁନ୍ତି, ତାହା ଭାବି ସେ ଅତ୍ୟନ୍ତ ଉତ୍କଣ୍ଠିତ ହୋଇପଡ଼ିଥିଲେ । ଆହାର ନିଦ୍ରା ପ୍ରାୟ ପରିତ୍ୟାଗ କରି ସେ ମଳିନ ବସ୍ତ୍ର ପରିଧାନ କରି ରହିଥାଆନ୍ତି । ମୁଣ୍ଡରେ ଜଟା ହୋଇଯାଇଥାଏ । ମନ୍ତ୍ରୀ, ସେନାପତି ଓ ପୁରୋହିତମାନଙ୍କ ଜରିଆରେ ସେ ସେହିଠାରୁ ନିଜ ନିର୍ଦ୍ଦେଶ ଦେଇ ରାଜ୍ୟ ଶାସନ କରୁଥାଆନ୍ତି । ତାଙ୍କର ସମସ୍ତ କର୍ମଚାରୀ ମଧ୍ୟ ଗୈରିକ ବସନ

ଧାରଣ କରି ଅତି ସରଳ ଜୀବନ ଯାପନ କରୁ-
ଥାନ୍ତି ।

ହନୁମାନ ଭରତଙ୍କୁ ପ୍ରଣାମ କରି କହିଲେ, "ମୁଁ ଶ୍ରୀରାମଚନ୍ଦ୍ରଙ୍କ କୁଶଳ ସମାଚାର ଜଣାଇବାକୁ ଏବଂ ଆପଣଙ୍କ କୁଶଳ ଜାଣିବାକୁ ଆସିଛି । ଆପଣ ଅବିଳମ୍ବେ ତାଙ୍କ ଦର୍ଶନ ଲାଭ କରିବେ । ସେ ରାକ୍ଷସ-ରାଜା ରାବଣକୁ ସଂହାର କରି ସୀତାଙ୍କୁ ଉଦ୍ଧାର କରିସାରି ଶକ୍ତିଶାଳୀ ମିତ୍ରମାନଙ୍କ ଗହଣରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରୁଛନ୍ତି । ତାଙ୍କ ସହ ଅଛନ୍ତି ସୀତା ଦେବୀ ଓ ଲକ୍ଷ୍ମଣ ।"



ଏ ସମ୍ବାଦ ଶୁଣି ଭରତ ତାଙ୍କ ହୃଦୟରେ ଆନନ୍ଦୋଚ୍ଛ୍ୱାସ ଧାରଣ କରି ନ ପାରି ମୁହୂର୍ତ୍ତକ ପାଇଁ ଜ୍ଞାନ ହରାଇଲେ । ତା'ପରେ ଚେତା ଫେରି ପାଇ କହିଲେ, "ମହାଶୟ ! ଏ ଚରମ ସୁସମ୍ବାଦ ପ୍ରଦାନକାରୀ ଆପଣ ଦେବତା ନା ମାନବ ମୁଁ ଜାଣେନା । ଆପଣଙ୍କୁ କି'ଣ ପୁରସ୍କାର ଦେବି ? ବିଶାଳ ଗୋ-ସମ୍ପଦ, ଶତ ଶତ ଗ୍ରାମ, ବିପୁଳ ଧନରତ୍ନ—ବହୁ କିଛି ଆପଣଙ୍କୁ ଉତ୍ସର୍ଗ କଲି ।"

ଭରତଙ୍କ ଆଗ୍ରହ ଦେଖି ହନୁମାନ ସବୁ ଘଟଣା ସବିସ୍ତାରେ ବର୍ଣ୍ଣନା କଲେ । ଚିତ୍ରକୂଟ-ଠାରେ ରାମଙ୍କୁ ଭେଟି ତାଙ୍କ ପାଦୁକା ଧରି ଅଯୋଧ୍ୟା ଫେରିବା ପରଠାରୁ ଯାହା ଯାହା ହୋଇଥିଲା, ସେସବୁ ଆଚମ୍ବିତ ହୋଇ ଭରତ ଶୁଣିଲେ । ତା'ପରେ ଭରତ ଶତ୍ରୁଘ୍ନଙ୍କୁ କହିଲେ, "ନଗରୀ ଭିତରେ ଦେବ ମନ୍ଦିରମାନଙ୍କରେ ପୂଜାର ଆୟୋଜନ କର । ଗାୟକ, ବାଦକ-ମାନଙ୍କ ଗହଣରେ ଆମେ ଯାଇ ଶ୍ରୀରାମଚନ୍ଦ୍ରଙ୍କୁ ପାଛୋଟି ଆଣିବା ନିମନ୍ତେ ଆୟୋଜନ କର ।"

ଶତ୍ରୁଘ୍ନ ଏକସହସ୍ର କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଲେ, "ଅବିଳମ୍ବେ ନନ୍ଦିଗ୍ରାମରୁ ଅଯୋଧ୍ୟା ଯାଏ ପଥକୁ ସମତଳ ଓ ସୁସଜ୍ଜିତ କର । ପଥ ଉପରେ ନୀର ସିଞ୍ଚନ କରି ପୁଷ୍ପ ବିଛାଇଦିଅ । ରାଜ ପଥରେ ଯେତେ ପାରୁଛ ତୋରଣ ନିର୍ମାଣ କରି ସେସବୁକୁ ସଜ୍ଜିତ କର ।"

ରାମଙ୍କୁ ପାଛୋଟି ଆଣିବା ନିମନ୍ତେ ଅବିଳମ୍ବେ



ଶୋଭାଯାତ୍ରା ଆଗେଇ ଚାଲିଲା । କିଏ ବା ଯାଇଥାଆନ୍ତି ଅଶ୍ୱାରୋହଣ କରି ଅଥବା ରଥ ଯୋଗେ । ସୈନିକମାନେ ଅସ୍ତ୍ରଶସ୍ତ୍ର ଧରି ଆନନ୍ଦ ଧ୍ୱନି କରି ଚାଲିଥାଆନ୍ତି । ମନ୍ତ୍ରୀମାନଙ୍କ ଭିତରେ ଧୃଷ୍ଟି, ଜୟନ୍ତ, ବିଜୟ, ସିଦ୍ଧାର୍ଥ, ଅର୍ଥସାଧକ ଅଶୋକ, ମନ୍ତ୍ରପାଳ ତଥା ସୁମନ୍ତ୍ର । ଅନ୍ତଃପୁରରୁ ବାହାରି ଆସିଥାନ୍ତି ଦଶରଥଙ୍କ ରାଣୀମାନେ । ରାମଙ୍କ ପାଦୁକା ଶିରଦେଶରେ ବହନ କରି ଭରତ ଅଗ୍ରସର ହେଉଥାନ୍ତି । ତାଙ୍କ ପଛରେ ଚାଲିଥାନ୍ତି ବ୍ରାହ୍ମଣ ବର୍ଗ ଏବଂ ନଗରର ବିଶିଷ୍ଟ ନାଗରିକବୃନ୍ଦ । ରାଜଛତ୍ର, ସ୍ୱର୍ଣ୍ଣଦଣ୍ଡ ଏବଂ ଚାମର ମଧ୍ୟ ବୁହା ହେଉଥାଏ ।

ରାମଙ୍କ ଦର୍ଶନ ଶୀଘ୍ର ନ ପାଇ ଭରତ ଅସ୍ଥିର ହୋଇଉଠୁଥାନ୍ତି । ଥରେ ସେ ହନୁମାନଙ୍କୁ ପଚ୍ଚାରିଦେଲେ, "ମହାଶୟ ! ଆପଣ ମୋ ସହ ଥଟ୍ଟା ତାମସା କରୁନାହାନ୍ତି ତ ? କାହାନ୍ତି ରାମଚନ୍ଦ୍ର ?"

ତେଣେ ଋଷି ଭରଦ୍ୱାଜ, ରାମ ଓ ତାଙ୍କ ଅନୁଚରମାନଙ୍କୁ ଦିବ୍ୟ ଭୋଜନ ଦ୍ୱାରା ଆପ୍ୟାୟିତ କଲେ । ଆଶ୍ରମର ପ୍ରାକୃତିକ ଶୋଭାସମ୍ପଦ ଅତିଥିମାନଙ୍କୁ ପ୍ରୀତ କଲା । ବାନରମାନଙ୍କ ଆନନ୍ଦ କୋଳାହଳରେ ସେ ମୁଲକ କମ୍ପିଉଠୁଥାଏ । ପ୍ରଭାତରେ ପୁଷ୍ପକ ବିମାନ ଆଶ୍ରମ ଛାଡ଼ିଥିଲା ।

"ଚାହିଁ ଆକାଶ ପଥକୁ । ଦେଖ ସୁରମ୍ୟ ବିମାନ । ଏକଦା ଏହା କୁବେରଙ୍କର ଥିଲା । ବର୍ତ୍ତମାନ ରାମଚନ୍ଦ୍ରଙ୍କର । ରଥରେ ଆରୋହଣ କରିଛନ୍ତି ଶ୍ରୀରାମଙ୍କ ସହ ସୀତା ଦେବୀ, ଲକ୍ଷ୍ମଣ, ବାନରରାଜା ସୁଗ୍ରୀବ ତଥା ରାକ୍ଷସ-ରାଜା ବିଭୀଷଣ ।" ହନୁମାନ ଘୋଷଣା କଲେ ।

ଶୁଭିଲା ଆନନ୍ଦ କୋଳାହଳ, "ଦେଖ, ଦେଖ, ରଥ ଅବତରଣ କରୁଛି ।"

ନିଜ ନିଜ ରଥ ଓ ହାତୀ ଉପରୁ ସଭିଏଁ ତତ୍‌କ୍ଷଣାତ୍ ଓହ୍ଲାଇପଡ଼ିଲେ । ରଥ ଅବତରଣ କଲା ଓ ରାମ ବାହାରି ଆସିଲେ । ଭରତ ଦୌଡ଼ିଯାଇ ତାଙ୍କୁ ପ୍ରଣାମ କଲେ ଓ ଶ୍ରଦ୍ଧା ଗଦ୍ ଗଦ କଣ୍ଠରେ କହିଲେ, "ଆପଣଙ୍କ ଆଦେଶ

ଶିରୋଧାର୍ଯ୍ୟ କରି ମୁଁ ସମସ୍ତଙ୍କୁ ସୁଖୀ ରଖିବାକୁ ଆପ୍ରାଣ ଚେଷ୍ଟା କରିଛି ।"

ରାମ ଭରତଙ୍କୁ କୁଣ୍ଢାଇପକାଇଲେ । ଭରତ ବିମାନ ଭିତରକୁ ଯାଇ ଲକ୍ଷ୍ମଣଙ୍କୁ ସମ୍ଭାଷଣ ଜଣାଇସାରି ସୀତାଙ୍କୁ ପ୍ରଣାମ କଲେ । ବୀର ଯୋଦ୍ଧାମାନଙ୍କୁ ଆନ୍ତରିକ ଅଭିବାଦନ ଜଣାଇଲେ । ସୁଗ୍ରୀବଙ୍କୁ କହିଲେ, "ଆମେ ଥିଲୁଁ ଚାରି ଭାଇ । ଆପଣ ଆମ ପଞ୍ଚମ ଭାଇ ହେଲେ । ଆପଣଙ୍କ ଉପକାର ଅପରିଶୋଧ ।" ବିଭୀଷଣଙ୍କୁ ସେ କହିଲେ, "ଆପଣଙ୍କ ପ୍ରତି କୃତଜ୍ଞତାରେ ମୋ ହୃଦୟ ଉଚ୍ଛୁଳି ଉଠୁଛି ।" ଶତ୍ରୁଘ୍ନ ରାମ ଲକ୍ଷ୍ମଣଙ୍କୁ ପ୍ରଣାମ କରିସାରି ସୀତାଙ୍କ ଚରଣ ବନ୍ଦନା କଲେ । ତତ୍ପରେ ରାମ ଯାଇ ତାଙ୍କ ଜନନୀଙ୍କୁ ପ୍ରଣାମ କରିସାରି ସୁମିତ୍ରା, କୈକେୟୀ ତଥା ମୁନି ବଶିଷ୍ଠଙ୍କୁ ପ୍ରଣାମ କଲେ । ଅଯୋଧ୍ୟାର ନାଗରିକବୃନ୍ଦ ରାମଙ୍କୁ ଉଚ୍ଛ୍ୱସିତ ସ୍ୱାଗତ ଜଣାଇଲେ ।

ଭରତ ସ୍ୱହସ୍ତରେ ରାମଙ୍କୁ ତାଙ୍କ ପାଦୁକା ପିନ୍ଧାଇଦେଲେ । ତା'ପରେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଆଜିଯାଏ ମୁଁ ଆପଣଙ୍କ ରାଜ୍ୟକୁ ପୂର୍ଣ୍ଣ ମନଧ୍ୟାନ ଦେଇ ପାଳନ କରିଛି । ଏଥର ସୁରକ୍ଷିତ ରାଜ୍ୟ ଆପଣଙ୍କୁ ସମର୍ପିଦେଲି । ଆପଣ ଆଜି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରିବାର ଦେଖି ମୋ ଜୀବନ ସାର୍ଥକ ହେଲା । ମୋର ସବୁ କାମନା ପୂର୍ଣ୍ଣ ହେଲା ।"

ରାମ ନନ୍ଦିଗ୍ରାମରେ ଉପନୀତ ହୋଇ ବିମାନକୁ





କୁବେରଙ୍କ ନିକଟକୁ ଫେରିଯିବାକୁ ନିର୍ଦ୍ଦେଶ ଦେଲେ ।

ଏହାପରେ ରାମଙ୍କ ଅଭିଷେକ ନିମନ୍ତେ ଆୟୋଜନ ଆରମ୍ଭ ହୋଇଗଲା । ସମଗ୍ର ନଗରୀ ଆନନ୍ଦ ଉତ୍ସବରେ ମୁଖରିତ ହେଲା । ନାଗରିକମାନେ ଉତ୍‌ଫୁଲ୍ଲ ଭାବରେ ନନ୍ଦିଗ୍ରାମ ଓ ଅଯୋଧ୍ୟା ମଧ୍ୟରେ ନାଚି ବୁଲୁଥାନ୍ତି । ରାମ ମଙ୍ଗଳ ସ୍ନାନ କରି, ପୁଷ୍ପମାଳ୍ୟ ଧାରଣ କରି ପ୍ରସ୍ତୁତ ହେଲେ । ମନ୍ତ୍ରପାଠ ଚାଲିଥାଏ । ରାମ, ଲକ୍ଷ୍ମଣ ତଥା ଭରତଙ୍କୁ ଶତ୍ରୁଘ୍ନ ନିଜେ ଅଳଙ୍କୃତ କରୁଥାନ୍ତି । ଦଶରଥଙ୍କ ରାଣୀମାନେ ସୀତାଙ୍କୁ ସଜ୍ଜିତା କରୁଥାନ୍ତି ।

ସୁମନ୍ତ୍ର ନାମକ ସାରଥୀ ରାମଙ୍କ ସକାଶେ ରଥ ଧରି ଆସି ପହଞ୍ଚିଲେ । ଦଶରଥଙ୍କ ମନ୍ତ୍ରୀମାନେ ନନ୍ଦିଗ୍ରାମରୁ ଆଗରୁ ଅଯୋଧ୍ୟା ଚାଲିଯାଇ ବଶିଷ୍ଠଙ୍କ ପରାମର୍ଶକ୍ରମେ ଅଭିଷେକର ସମସ୍ତ ଆୟୋଜନ କରିଥାନ୍ତି । ପରେ ପରେ ରଥାରୋହଣ କରି ରାମ ଅଯୋଧ୍ୟାରେ ପହଞ୍ଚିଲେ । ସୁଗ୍ରୀବ ଓ ହନୁମାନ ମଧ୍ୟ ସ୍ନାନ ସମାପନ କରି ଅଯୋଧ୍ୟା ପୁରୀ ଦର୍ଶନ କଲେ ।

ନାଗରିକମାନଙ୍କୁ ସ୍ୱୟଂ ରାମ ତାଙ୍କ ବନବାସକାଳୀନ ଅଭିଜ୍ଞତା ଶୁଣାଉଥାନ୍ତି । ହନୁମାନ ଓ ସୁଗ୍ରୀବଙ୍କ ବୀରତ୍ୱ, ବିଭୀଷଣଙ୍କ ବିଶ୍ୱସ୍ତତା ଇତ୍ୟାଦି କଥା ସମସ୍ତେ ବିସ୍ମୟ ଭରେ ଶୁଣୁଥାନ୍ତି ।

ରାମ ଦଶରଥଙ୍କ ଉଆସରେ ପ୍ରବେଶ କଲେ । ଉଆସର ଉଦ୍ୟାନବର୍ତ୍ତୀ ଅଂଶରେ ସୁଗ୍ରୀବ ପ୍ରମୁଖଙ୍କ ରହିବାର ବ୍ୟବସ୍ଥା ହେଲା ।

ସୁଗ୍ରୀବ ଚାରି ବୀରଙ୍କୁ ଚାରିଗୋଟି ସ୍ୱର୍ଣ୍ଣକଳସ ଦେଇ କହିଲେ, "କାଲି ପ୍ରାତଃକାଳ ପୂର୍ବରୁ ଚାରି ସମୁଦ୍ରରୁ ନୀର ସଂଗ୍ରହ କରି ତୁମେମାନେ ପ୍ରତ୍ୟାବର୍ତ୍ତନ କରିବା ଆବଶ୍ୟକ ।"

କଳସ ଧରି ବହିର୍ଗତ ହେଲେ ହନୁମାନ, ଜାମ୍ବବାନ, ବେଗଦର୍ଶୀ ଓ ଋଷଭ । ସେମାନେ କେବଳ ଚାରି ସମୁଦ୍ରର ନୀର ସହ ପାଞ୍ଚଶହ ନଦୀର ନୀର ମଧ୍ୟ ସଂଗ୍ରହ କରି ଫେରିଲେ ।

ଶାସ୍ତ୍ରବିଧି ଅନୁସାରେ ହେଲା ରାମଙ୍କ ଅଭି-

ଷେକ । ରତ୍ନଖଚିତ ସିଂହାସନରେ ଉପବେଶନ କଲେ ରାମ ସୀତା । ପୁରୋହିତମାନଙ୍କ ତତ୍ତ୍ୱାବଧାନରେ ପ୍ରଥମେ ମନ୍ତ୍ରୀମାନେ ଓ ପରେ ପରେ ଋତ୍ୱିକ୍, ବ୍ରାହ୍ମଣ, ଯୋଦ୍ଧା ଓ ନାଗରିକମାନେ ଅଭିଷେକ ଅନୁସାରେ ଅଂଶ ଗ୍ରହଣ କଲେ ।

ଶତ୍ରୁଘ୍ନ ରାମ ସୀତାଙ୍କ ଶିର ଉପରେ ଶ୍ୱେତ ଛତ୍ର ଧାରଣ କରିଥାନ୍ତି । ସୁଗ୍ରୀବ ଓ ବିଭୀଷଣ ଚାମର ବୁଲାଉଥାନ୍ତି ।

ଅଭିଷେକ ଅବସରରେ ରାମ ବ୍ରାହ୍ମଣମାନଙ୍କୁ ସବତ୍ସା ଗାଭୀ, ସ୍ୱର୍ଣ୍ଣ ଓ ରେଶମ ବସ୍ତ୍ର ପ୍ରଦାନ କଲେ । ସୀତାଙ୍କ ହସ୍ତରେ ଗୋଟିଏ ମୁକ୍ତାହାର ଦେଇ ରାମ କହିଲେ, ଯାହାପ୍ରତି ତୁମର ବାତ୍ସଲ୍ୟ ମମତାର ଉଦ୍ରେକ ହେଉଛି, ତାହାକୁ ଏହା ଉପହାର ଦିଅ ।”

ସୀତା ତତ୍‌କ୍ଷଣାତ୍ ହନୁମାନଙ୍କୁ ଡାକି ହାରଟି ଅର୍ପଣ କଲେ । ରାମ ଅନ୍ୟ ବାନରମାନଙ୍କୁ ଉପଯୁକ୍ତ ପୁରସ୍କାରମାନ ଦେଲେ ।

ଅଭିଷେକ ସମାପ୍ତ ହେଲା । ବିଭୀଷଣ ଲଙ୍କାକୁ ପ୍ରତ୍ୟାବର୍ତ୍ତନ କଲେ । ରାମ ଭରତଙ୍କୁ ଯୁବରାଜ ରୂପେ ଘୋଷଣା କରି ରାଜ୍ୟଶାସନ ଆରମ୍ଭ କଲେ ।

ଅଯୋଧ୍ୟାବାସୀଙ୍କ ଆନନ୍ଦ କଥା କହିଲେ ନ ସରେ । ରାମଙ୍କୁ ଫେରିପାଇ ସେମାନେ ଯେତେଦୂର ପୁଲକିତ ହେଉଥାନ୍ତି, ଭରତଙ୍କ ଆଚରଣ ଯୋଗୁ ସେତିକି ସନ୍ତୋଷ ପ୍ରକାଶ କରୁଥାନ୍ତି । ଚଉଦବର୍ଷକାଳ କ୍ଷମତାସୀନ ଥାଇ ମଧ୍ୟ ସିଂହାସନ ପ୍ରତି ଭରତଙ୍କ ମନରେ ଟିକିଏ ମଧ୍ୟ ମୋହ ଜାତ ହୋଇ ନ ଥିଲା । ବାସ୍ତବିକ, ସେ ଚଉଦବର୍ଷ କାଳ ଭରତଙ୍କ ଜୀବନରେ ଥିଲା ଏକ ମହତ୍ତ୍ୱପୂର୍ଣ୍ଣ ସାଧନାର ସମୟ । ସେ ତାଙ୍କ ଅଗ୍ରଜଙ୍କ ପ୍ରତିନିଧିରୂପେ ଯେତେ ନ୍ୟାୟପୂର୍ଣ୍ଣ ଭାବରେ ସମ୍ଭବ, ରାଜ୍ୟ ପ୍ରତିପାଳନ କରିଥିଲେ । ସମୟ ଆସିବା ମାତ୍ରେ କୃତଜ୍ଞ ଚିତ୍ତରେ ରାମଙ୍କୁ ସ୍ୱାଗତ କରି ସିଂହାସନ ପ୍ରତ୍ୟାର୍ପଣ କଲେ ।





# ଚାନ୍ଦ ବିବି

ଆହମଦ୍‌ନଗରର ରାଜକୁମାରୀଙ୍କୁ 'ଚାନ୍ଦ' କହିବାରେ କୌଣସି ବିସ୍ମୟ ନ ଥିଲା, କାରଣ ବାସ୍ତବରେ ସେ ଥିଲେ ଚାନ୍ଦ ଭଳି ସୁନ୍ଦରୀ । ଜନାନାର ପରଦାର ଭିତରେହିଁ ସେ ଆବଦ୍ଧ ରହୁଥିଲେ ସତ, କିନ୍ତୁ ତାଙ୍କ ବୁଦ୍ଧି ଓ ସାହସ କଥା ସମସ୍ତଙ୍କୁ ଜଣା ଥିଲା ।

ସୋଲାପୁର ସହର ଉପରେ ନିଜ ନିଜ ଆଧିପତ୍ୟ ସାବ୍ୟସ୍ତ କରିବା ନିମନ୍ତେ ଉଭୟ ବିଜାପୁର ଓ ଆହମଦ୍‌ନଗର ରାଜ୍ୟ ସେତେବେଳେ ପରସ୍ପର ଝଗଡ଼ା କରୁଥା'ନ୍ତି । ଅବଶେଷରେ ବିଜାପୁରର ସୁଲ୍‌ତାନ୍ ଆଲି ଆଦିଲ୍‌ସାହାଙ୍କୁ ଚାନ୍ଦ ବିବାହ କଲେ ଓ ସୋଲାପୁର ଯୌତୁକ ରୂପେ ବିଜାପୁରକୁ ଦିଆଗଲା । ଉଭୟ ରାଜ୍ୟ ମଧ୍ୟରେ ବନ୍ଧୁତା ସ୍ଥାପିତ ହେଲା ।



କିନ୍ତୁ ୧୫୮୦ରେ ଆଲି ଆଦିଲ୍‌ସାହ ନିହତ ହେଲେ । ସୁଲତାନ୍ ଦମ୍ପତିଙ୍କର ସନ୍ତାନ ସନ୍ତତି ନ ଥିଲେ । ସୁଲ୍‌ତାନ୍‌ଙ୍କ ନଅ ବର୍ଷ ବୟସ୍କ ଭ୍ରାତୃଷ୍ପୁତ୍ରଙ୍କୁ ସିଂହାସନରେ ବସାଇ ତାଙ୍କ ଅଭିଭାବକ ରୂପେ ଚାନ୍ଦ ବିବି ରାଜ୍ୟ ଶାସନ କଲେ । ତାଙ୍କ ରାଜୁତି କାଳର ଗୌରବ ଗାଥା ଆଜି ବି ଜନଶ୍ରୁତିରେ ଜୀଇଁ ରହିଛି । ଶିଶୁ ସୁଲ୍‌ତାନ୍ ତାଙ୍କୁ ଗଭୀର ଭକ୍ତି କରୁଥିଲେ ।





କିନ୍ତୁ ରାଜ୍ୟର ଅମାତ୍ୟ ଓ କର୍ମଚାରୀବର୍ଗ ଲୁବ୍ଧ ଥିଲେ ଆଲି ଆଦିଲ୍‌ଙ୍କ ମୃତ୍ୟୁ ପରେ ସେମାନେ ଯଥେଚ୍ଛା ପ୍ରଜାଙ୍କୁ ଶୋଷଣ କରିବେ । ତାହା ନ ହୋଇ ପାରିବାରୁ ସେମାନେ ଚାନ୍ଦ ବିବି ଓ ଶିଶୁ ସୁଲତାନ୍‌ଙ୍କୁ ହତ୍ୟା କରିବାର ଷଡ଼ଯନ୍ତ୍ର କଲେ । ଶିଶୁକୁ ବଞ୍ଚାଇବା ନିମନ୍ତେ ଚାନ୍ଦ ବିବି ଆହ୍‌ମଦ୍‌ନଗର ଚାଲିଗଲେ ।



ଚାନ୍ଦ ବିବିଙ୍କ ଭାଇ ମୁର୍ତ୍ତାଜା ଥିଲେ ସେତେବେଳେ ଆହ୍‌ମଦନଗରର ଶାସକ । ସେ ଆତ୍ମବାସ୍ୱା ପ୍ରକୃତିର ଥିଲେ । ତାଙ୍କ ପୁଅ ହୁସେନ୍ ତାଙ୍କୁ ହତ୍ୟା କଲେ । କିନ୍ତୁ ପିତୃହନ୍ତା ହୁସେନ୍ ମଧ୍ୟ ପରେ ପରେ ଅମାତ୍ୟମାନଙ୍କ ଦ୍ୱାରା ବନ୍ଦୀ ଓ ନିହତ ହେଲେ । ହୁସେନ୍‌ଙ୍କର ଜଣେ ସମ୍ପର୍କୀୟ ଭାଇ ସୁଲତାନ୍ ହେଲେ । ଏସବୁ ଦୁର୍ଘଟଣା ଚାନ୍ଦଙ୍କୁ ଅତ୍ୟନ୍ତ ବିଚଳିତ କଲା ।



ସେତେବେଳେ ଦିଲ୍ଲୀର ବାଦ୍‌ଶାହ ଥିଲେ ଆକବର । ଆହ୍‌ମଦନଗରର ଅସ୍ଥିର ଅବସ୍ଥାର ସୁଯୋଗ ନେଇ ସେ ରାଜ୍ୟଟି ଦଖଲ କରିନେବା ନିମନ୍ତେ ଗୋଟିଏ ବିରାଟ ସୈନ୍ୟ ବାହିନୀ ପଠାଇଲେ । ଘମାଘୋଟ ଯୁଦ୍ଧ ହେଲା । ଆହ୍‌ମଦନଗର ପକ୍ଷରେ ଦକ୍ଷ ସେନାପତି ନ ଥିବାର ଦେଖି ନିଜେ ଚାନ୍ଦ ବିବି ଯାଇ ସୈନ୍ୟଦଳ ପରିଚାଳନା କଲେ ।

ଚାନ୍ଦ ବିବି ସେନାପତି ପୋଷାକ ପିନ୍ଧି ତେଣେ ସୈନ୍ୟଦଳ ପରିଚାଳନା କରିବା ସଙ୍ଗେ ସଙ୍ଗେ ଏଣେ ନଅର ଭିତରେ କିପରି ଯଥାଯଥ ପ୍ରସ୍ତୁତ ଚାଲିବ, ତୁମ ପ୍ରତି ମଧ୍ୟ ଦୃଷ୍ଟି ଦେଇଥାନ୍ତି । ମୋଗଲ ବାହିନୀ ଦୁର୍ଗର ପ୍ରାଚୀର ଭାଙ୍ଗି ପକାଇବାକୁ ଉଦ୍ୟମ କରୁଥାନ୍ତି । ଅବଶେଷରେ, ସନ୍ଧ୍ୟା ବେଳକୁ ସେମାନେ ପ୍ରାଚୀରର ଏକାଂଶ ଭାଙ୍ଗି ଦେଲେ ।





କିନ୍ତୁ ଅନ୍ଧାରରେ ଦୁର୍ଗ ଭିତରେ ପଶିଲେ କାଳେ ବିପଦର ସମ୍ମୁଖୀନ ହେବେ, ସେହି ଭୟରେ ସେମାନେ ସକାଳ ହେବାକୁ ଅପେକ୍ଷା କଲେ । କିନ୍ତୁ ରାତିକ ଭିତରେ ଦୁର୍ଗର ନରନାରୀ ସମସ୍ତଙ୍କୁ ଏକାଠି କରି ଚାନ୍ଦ ବିବି ପ୍ରାଚୀରକୁ ମରାମତି କରି ଦେଲେ ।

ସକାଳ ହେବା ବେଳକୁ ଦେଖା ଗଲା, ଖାଲି ଯେ ପ୍ରାଚୀର ପୁଣି ନୂଆ ହୋଇ ଯାଇଛି, ସେତିକି ନୁହେଁ, ପ୍ରାଚୀର ଉପରେ କମାଣ ସଜାଇ ଶତ୍ରୁକୁ ସାମ୍ନା କରିବାକୁ ଆହ୍‌ମଦ୍‌ନଗରର ଦୁର୍ଗବାସୀମାନେ ପ୍ରସ୍ତୁତ ହୋଇ ରହିଛନ୍ତି ।





ମୋଗଲ୍ ବାହିନୀ ବିସ୍ମିତ ଓ ହତାଶ ହେଲେ । ସେମାନେ ଅଗତ୍ୟା ଦୁର୍ଗର ଆକ୍ରମଣ ନିମନ୍ତେ ପ୍ରସ୍ତୁତ ହେଲେ । ଯୁଦ୍ଧ ଚାଲିଲା । ଚାନ୍ଦ ବିବି ଦେଖିଲେ, ତାଙ୍କ ଗୁଳାଗୁଳି ଶେଷ ହୋଇ ଆସୁଛି । ସେ ଗୁଳି ଭାବରେ ନଅରରେ ଥିବା ଯାବତୀୟ ଧାତୁ—ଏପରିକି ଟଙ୍କା ପଇସା, ସୁନା-ରୁପା ମଧ୍ୟ ବାରୁଦ ସହ ମିଶାଇ ବ୍ୟବହାର କଲେ ।

ମୋଗଲ୍‌ମାନେ ହତାଶ ହେଲେ । ଲଢ଼େଇ ଚାଲୁ ରଖି ନ ପାରି ସେମାନେ ଚାନ୍ଦ ବିବିଙ୍କ ସହ ସନ୍ଧି କଲେ । ଆହ୍‌ମଦ ନଗରର ଜନସାଧାରଣ ଚାନ୍ଦ ବିବିଙ୍କୁ ସେମାନଙ୍କ ରକ୍ଷାକର୍ତ୍ତ୍ରୀ ଭାବରେ ଅଭିନନ୍ଦନ ଜଣାଇଲେ ।





ମୋଗଲ୍‌ମାନେ ବୁଝିଲେ ଚାନ୍ଦ ବିବି ଜୀବିତ ଥିବା ଯାଏ ଆହ୍‌ମଦ୍‌ନଗର ସେମାନଙ୍କ ଦଖଲକୁ ଆସି ପାରିବ ନାହିଁ । ସେମାନେ ପୁଣି ଥରେ ଦୁର୍ଗ ଆକ୍ରମଣ କରିବା ପୂର୍ବରୁ ଷଡ଼ଯନ୍ତ୍ର କରି ଚାନ୍ଦ ବିବିଙ୍କୁ ବିଷ ଦେଇ ହତ୍ୟା କଲେ । ଚାନ୍ଦ ବିବି ଅବଶ୍ୟ ସେତେବେଳକୁ ଇତିହାସରେ ଚିରକାଳ ପାଇଁ ଜଣେ ବୀରାଙ୍ଗନା ରୂପେ ସ୍ଥାନ ପାଇବାର ଯୋଗ୍ୟତା ଅର୍ଜନ କରି ସାରିଥାନ୍ତି ।

# କାହାଣୀ-ଶିରୋନାମା-ପ୍ରତିଯୋଗିତା

## ଏକ ଉପଯୁକ୍ତ ଶିରୋନାମା ଦେଇ ୨୫ ଟଙ୍କା ପୁରସ୍କାର-ବିଜୟୀ ହୁଅନ୍ତୁ

?

ଲଣ୍ଡନ ନଗରୀରେ ଅଭିଜାତମାନଙ୍କର ଗୋଟିଏ କ୍ଲବ୍ ଥିଲା । କେବଳ ସମ୍ଭ୍ରାନ୍ତ ଜମିଦାର ବଂଶର ଲୋକଙ୍କ ଛଡ଼ା ସେଥିରେ ଅନ୍ୟ କେହି ସଭ୍ୟ ହୋଇ ପାରୁ ନ ଥିଲେ । କିନ୍ତୁ ଯେତେବେଳେ ଥମାସ୍ ମୁର୍ କବି ହିସାବରେ ପ୍ରଭୂତ ଖ୍ୟାତି ଲାଭ କଲେ, ସେତେବେଳେ ତାଙ୍କୁ କ୍ଲବ୍‌ର ସଭ୍ୟ କରି ନିଆଗଲା ।

କିନ୍ତୁ କେତେଜଣ ଜମିଦାର ଏକଥା ସହି ପାରିଲେ ନାହିଁ । ତାଙ୍କ ଭିତରୁ ଜଣେ କ୍ଲବ୍‌ରେ ମୁର୍ ପହଞ୍ଚିବା ମାତ୍ରେ ଆଗେଇ ଯାଇ ତାଙ୍କୁ ପଚାରିଲେ, "ଆଚ୍ଛା, ଏକଥା କ'ଣ ସତ ଯେ ଆପଣଙ୍କ ବାପା ଜଣେ ମାମୁଲି ଦୋକାନୀ ମାତ୍ର ଥିଲେ ?"

"ସତ । ମାମୁଲି କିନ୍ତୁ ବଡ଼ ସାଧୁ ଦୋକାନୀ ଥିଲେ ।" ମୁର୍ ନିରୀହ ଭାବରେ ଉତ୍ତର ଦେଲେ ।

"ବେଶ୍ । ଆପଣ ତେବେ ତାଙ୍କର ପନ୍ଥା ନ ଧରିଲେ କିଆଁ ?" ଜମିଦାର ପଚାରିଲେ ।

"ମୋର ସେଭଳି ବୁଦ୍ଧି ନ ଥିଲା । ଆଚ୍ଛା, ମୁଁ ଶୁଣିଛି ଆପଣଙ୍କ ବାପା କୁଆଡ଼େ ଜଣେ ଭଦ୍ରଲୋକ ଥିଲେ । ଆପଣ ତାଙ୍କ ପନ୍ଥା ନ ଧରିଲେ କାହିଁକି ?" ମୁର୍ ଉତ୍ତର ଦେଲେ ।

ଏଥିରେ ଅନ୍ୟମାନେ ଏଡ଼େ ପ୍ରବଳ ଭାବରେ ହସି ଉଠିଲେ ଯେ ଜମିଦାର ଜଣକ ପଳାଇଗଲେ ।

  

ଉପରୋକ୍ତ କାହାଣୀ ପାଇଁ ଭାବଚନ୍ତ ଶିରୋନାମାଟିଏ ଠିକ୍ କରି ପୋଷ୍ଟକାର୍ଡ଼ରେ ଲେଖି "ଶିରୋନାମା ପ୍ରତିଯୋଗିତା", ଜହ୍ନମାମୁଁ, Chandamama Buildings, 2 & 3 Arcot Road, Madras-600026 ଠିକଣାରେ ଜାନୁଆରୀ ୧୦ ତାରିଖ ସୁଦ୍ଧା ପଠାନ୍ତୁ । ତେବେ, ଫଟୋ ପରିଚୟ ପ୍ରତିଯୋଗିତା ପାଇଁ ଲେଖା ଏକା କାର୍ଡ଼ରେ ପଠାଇବେ ନାହିଁ ।

ପ୍ରତିଯୋଗିତାର ଫଳ ମାର୍ଚ୍ଚ '୭୮ ସଂଖ୍ୟାରେ ପ୍ରକାଶ ପାଇବ ।

---

ନଭେମ୍ବର ପ୍ରତିଯୋଗିତାର ନିର୍ବାଚିତ ଶିରୋନାମା : "ସମ୍ପଦହିଁ ସ୍ୱାସ୍ଥ୍ୟ !"

ପୁରସ୍କାର ବିଜୟୀ : ପ୍ରଦୀପ କୁମାର ଗୁରୁ, ଟିଟିଲାଗଡ଼ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ୨୫

## ପୁରସ୍କୃତ ପରିଚୟୋକ୍ତି ମାର୍ଚ୍ଚ ୧୯୭୮ ସଂଖ୍ୟାରେ ପ୍ରକାଶ ପାଇବ



G. Srinivasa Murty



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଜାନୁଆରୀ ୧୫ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ନଭେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ସୁଖ ବେଳେ ସାଥୀ ହୋଇ ଦେଉଅଛୁ ହରଷ,
ଦ୍ୱିତୀୟ ଚିତ୍ର : ଦୁଃଖ ବେଳେ ଦେଉଅଛୁ ମମତାର ପରଶ ।
ପ୍ରେରକ : ପ୍ରଦୀପ କୁମାର ମିଶ୍ର, କାମାକ୍ଷା ନଗର ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।







# ଆମେ ସମସ୍ତେ ପଢିବାକୁ ଭଲପାଉ

# ଜହ୍ନ ମାମୁଁ





## ତେଣୁ ଆପଣ ବି ପଢନ୍ତୁ ।

ଚନ୍ଦାମାମାକୁ ପଢ଼ନ୍ତି ପୁରୁଷ, ସ୍ତ୍ରୀ, ପିଲାଛୁଆ ସମସ୍ତେ, ବାରଟି ଭାଷାରେ ଯଥା : ଇଂରାଜି, ହିନ୍ଦି, ଓଡ଼ିଆ, ମରାଠୀ, ତେଲୁଗୁ, କାନାଡ଼ା, ତାମିଲ, ଗୁଜରାଟୀ, ମାଲାୟଲମ, ବଙ୍ଗଳା, ପଂଜାବୀ, ଆସାମୀରେ ପ୍ରକାଶ ପାଏ । ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ପତ୍ରିକାଟିରେ ଗାଉଁଲି ଗଳ୍ପଗୁଡ଼ିକ ସମସ୍ତଙ୍କର ମନ ହରଣ କରିଥାଏ । ଚନ୍ଦାମାମା ଶିଶୁମାନଙ୍କ ପାଇଁ ଏକ ମାସିକ ପତ୍ରିକା ଯାହାକୁ ପଢ଼ିଲେ ବୁଢ଼ା କହେ ମୁଁ ଯୁବକ ହେଲି ଯୁବକ କହେ ମୁଁ ଜ୍ଞାନ ଅର୍ଜିଲି ।



ବାର୍ଷିକ ଗ୍ରାହକ ହେବାପାଇଁ ଯୋଗାଯୋଗ କରନ୍ତୁ ! ଡଲ୍ଟନ୍ ଏଜେନ୍ସିଜ,
ଚନ୍ଦାମାମା ବିଲ୍ଡିଂ, ମାଦ୍ରାଜ-୬୦୦ ୦୨୬